# କନ୍ଧ କବି ଯୋଗଦାସ



ଭାଗୀରଥି ନେପାକ

# କନ୍ଧକବି ଯୋଗଦାସ

ଲେଖକ
ଭାଗୀରଥି ନେପାକ

**ପ୍ରକାଶକ :**
ମହିମା ପ୍ରକାଶନ
ଏନ୍-୧/୧୨୧, ଆଇ.ଆର୍.ସି. ଭିଲେଜ୍
ନୂଆପଲ୍ଲୀ, ଭୁବନେଶ୍ୱର-୧୫
ଓଡ଼ିଶା (ଭାରତ) ଫୋନ୍ - ୫୫୧ ୦୯୪
**ପ୍ରଥମ ପ୍ରକାଶ :**
୨୦୦୦
**ମୁଦ୍ରଣ :**
ସାହିତ୍ୟସିନ୍ଧୁ, ଭୁବନେଶ୍ୱର-୩
**ମୂଲ୍ୟ :**
ଟ ୧୦/- (ଦଶ ଟଙ୍କା)

# KANDHA KABI JUGA DAS

by Bhagirathi Nepak

**Publisher :**
Mahima Prakashana
N-1/121,I.R.C. Village, Nayapalli
Bhubaneswar - 15, Orissa (India)
Ph. : 551 094
**1st Edition :**
2000
**Price :**
Rs. 10/- (Rupees Ten Only)



ଛଟା ନରସିଂହ

## // ସୂଚିପତ୍ର //

- କନ୍ଧ ସଂପ୍ରଦାୟର ଦୁଇ କବି : ଯୁଗ ଦାସଓ ଭୀମଭୋଇ
- କବି ଯୁଗ ଦାସ /ଯୋଗ ଦାସ
- କବି ଯୁଗ ଦାସଙ୍କ ସମୟ
- 'ନୃସିଂହ ଚରିତ'ରେ ଯୁଗ ଦାସଙ୍କ ସ୍ୱପରିଚିତି
- ଯୁଗ ଦାସଙ୍କ ନୃସିଂହ ଚରିତ ଓ ଯମୁନା କନ୍ଧୁଣୀ ପ୍ରସଙ୍ଗ
- ହରି ଶବର ଓ ଯମୁନା କନ୍ଧୁଣୀ
- ହରି ଶବର ଓ ଯମୁନା କନ୍ଧୁଣୀ : ଆଦିବାସୀ ଜାତି ବିଚାର
- ହରି ଶବର ବଂଶଜ ଯୁଗ ଦାସଙ୍କ 'ଦାସ' ସଂଜ୍ଞା
- 'ନୃସିଂହ ଚରିତ' ଗ୍ରନ୍ଥର ପ୍ରାଚୀନତା
- କବି ଯୁଗ ଦାସଙ୍କ ଜୀବନ ଦର୍ଶନ
- ଯୁଗ ଦାସଙ୍କ ନୃସିଂହ ଚରିତ : ବିଷୟବସ୍ତୁ
- ମାର୍ଜାର କେଶରୀ : ଆଦିବାସୀ ଚେତନାର ପ୍ରତୀକ
- ଐତିହାସିକ ଶିବ ପ୍ରସାଦ୍ ଦାଶଙ୍କର ନୃସିଂହନାଥ ବର୍ଣ୍ଣନା

### ଫଟୋ ଚିତ୍ର

ନୃସିଂହନାଥ ମନ୍ଦିର : ମାର୍ଜାର କେଶରୀ

ଜଟା ନରସିଂହ : ଚୌହାନ ରାଜା ବୈଜଲଦେବ

ସନ୍ଥ କବି ଭୀମଭୋଇ, ନିଶାନୀ ଦେବୀ ପୀଠରେ ଧନୁତୀର ପ୍ରତିଯୋଗିତା

# କନ୍ଧ ସଂପ୍ରଦାୟର ଦୁଇ କବି : ଯୁଗ ଦାସ ଓ ଭୀମ ଭୋଇ

କେବଳ ଓଡ଼ିଶା କି ଭାରତବର୍ଷ ନୁହେଁ,ସମଗ୍ର ପୃଥିବୀରେ ଆଦିବାସୀ ସଂପ୍ରଦାୟର ଲୋକମାନେ ଅଶିକ୍ଷିତ, ଅବହେଳିତ ଓ ନିପୀଡ଼ିତ ଅବସ୍ଥାରେ ପଡ଼ି ରହିଥିବା ଜଣାଯାଏ । ଯୁଗେ ଯୁଗେ ସେମାନେ ଶିକ୍ଷିତ ଓ ଆଗୁଆ ଶ୍ରେଣୀର ଲୋକଙ୍କର ଶୋଷଣର ଶିକାର ହୋଇଥିବା ଦେଖାଯାଏ । ଶିକ୍ଷା ଦୀକ୍ଷାରୁ ବଞ୍ଚିତ ଆଦିବାସୀମାନେ ସାଧାରଣତଃ ସହରଠାରୁ ଓ ସହରୀ ସଭ୍ୟତା ଠାରୁ ଦୂରେଇ ରହନ୍ତି । ବଣ ଜଙ୍ଗଲରେ ବାସ କରନ୍ତି । ସ୍କୁଲ କଲେଜ ତ ଦୂରର କଥା, ବିଜୁଳି ଆଲୁଅ, ପକ୍କା ସଡ଼କ, ପାଣିକଳ ସେମାନଙ୍କ ପାଇଁ ସାତ ସପନ । ପେଟ ଚାଖଣ୍ଡକ ପାଇଁ ଦିନ ସାରା ଖଟନ୍ତି । ମୂଲ ନ ପାଇଲେ ବଣର ଫଳମୂଳ, ଡାଳ ଖାଇ ଜୀବନ ଅତିବାହିତ କରନ୍ତି ।

ଏହିପରି ଭାବରେ ଜୀବନ କଟାଉଥିବା ଆଦିବାସୀ ଲୋକ ଆଧୁନିକ ଶିକ୍ଷିତ ସମାଜ ପାଇଁ କ'ଣ ବା କରିପାରିବେ ? ନିଜ ରକ୍ଷଣ ଅସମ୍ଭବ : ସେ କାହୁଁ ପରକୁ ରଖିବ ?

କିନ୍ତୁ ଓଡ଼ିଶା ମାଟିରେ ସବୁ ଅସମ୍ଭବ ସମ୍ଭବ ହୋଇପାରିଛି । ଆଶ୍ଚର୍ଯ୍ୟର କଥା, ଓଡ଼ିଶାର ଆଦିବାସୀ କନ୍ଧ ସମାଜରୁ ଦୁଇ ଜଣ କନ୍ଧ

କବି ବାହାରି ଓଡ଼ିଶାର ଜନ ଜୀବନ ଉପରେ ସେମାନଙ୍କ ଧାର୍ମିକ ପ୍ରଭାବ ପକାଇ ସାରା ଭାରତରେ ଚହଳ ସୃଷ୍ଟି କରିପାରିଛନ୍ତି । ଏହା ଓଡ଼ିଶା ପାଇଁ କମ୍ ଗୌରବର କଥା ନୁହେଁ । ସେହି ଦୁଇ ଆଦିବାସୀ ଲୋକ ହେଲେ ସପ୍ତଦଶ ଶତାବ୍ଦୀର ବୈଷ୍ଣବ କବି ଯୁଗ (ଯୋଗ) ଦାସ ଓ ଊନବିଂଶ ଶତାବ୍ଦୀର ମହିମା ଧର୍ମର କବି ଭୀମଭୋଇ ।

ବୈଷ୍ଣବ କବି ଯୁଗ ଦାସ ପଶ୍ଚିମ ଓଡ଼ିଶାର ପ୍ରଖ୍ୟାତ ନୃସିଂହ ନାଥ ମନ୍ଦିରର ଦେବତା ମାର୍ଜାର କେଶରୀଙ୍କୁ ନେଇ ତାଙ୍କର 'ନୃସିଂହ ଚରିତ' ଗ୍ରନ୍ଥ ରଚନା କଲାବେଳେ ମହିମା ଧର୍ମର ଆଦିକବି ଭୀମ ଭୋଇ ମହିମା ଧର୍ମ ପ୍ରଖ୍ୟାପକ ସ୍ତୁତି ଚିନ୍ତାମଣି ଗ୍ରନ୍ଥ ସମେତ ରାଶି ରାଶି ଭଜନ, ଜଣାଣ, ସ୍ତୁତି, ଚଉତିଶା ଓ ଗୀତାମାନ ରଚନା କରି ଯାଇଛନ୍ତି ।

ଯୁଗ ଦାସଙ୍କ 'ନୃସିଂହ ଚରିତ' ବିଷ୍ଣୁଙ୍କର ଅନ୍ୟ ଏକ ଅବତାର "ମାର୍ଜାର କେଶରୀ"ଙ୍କ ମାହାତ୍ମ୍ୟ ଗାନ କରାଯାଇଥିବା ସ୍ଥଳେ ଭୀମ ଭୋଇଙ୍କ ସ୍ତୁତି ଚିନ୍ତାମଣିରେ ମହିମା ଧର୍ମର ପ୍ରତିଷ୍ଠାତା ସ୍ୱୟଂ ବିଷ୍ଣୁଙ୍କ ସ୍ୱରୂପ କୁହାଯାଉଥିବା "ମହିମା ଗୋସାଇଁ" ତଥା ପୃଥିବୀର ସର୍ବ କନିଷ୍ଠ ଧର୍ମ ମହିମା ଧର୍ମ ସମ୍ବନ୍ଧରେ ସବିଶେଷ ବିବରଣୀ ଦିଆଯାଇଛି ।

ଉଲ୍ଲେଖନୀୟ ଯେ, ଯୁଗ ଦାସ କିମ୍ବା ଭୀମଭୋଇ ଆଧୁନିକ ସ୍କୁଲ କଲେଜରେ ଶିକ୍ଷାଲାଭ କରି ନଥିଲେ । ସେମାନଙ୍କ ମତବାଦ ସମ୍ପୂର୍ଣ୍ଣ ପ୍ରାଚ୍ୟ ଦର୍ଶନ ଉପରେ ପ୍ରତିଷ୍ଠିତ ଥିଲା । ଉଭୟଙ୍କ ଚିନ୍ତା ଓ ଚେତନା ଓଡ଼ିଶାର ଜନ ସାଧାରଣଙ୍କ ଉପରେ ଅଦ୍ଭୁତ ପ୍ରଭାବ ବିସ୍ତାର କରିଥିଲା । ଉଭୟେ ଥିଲେ ଏବକାର ଅନୁନ୍ନତ ପଶ୍ଚିମ ଓଡ଼ିଶାର ଅଧିବାସୀ ।

ଏମାନେ ଯେତେବେଳେ ଓଡ଼ିଆ ଭାଷାରେ ଗ୍ରନ୍ଥ ରଚନା ଆରମ୍ଭ କରିଥିଲେ, ସେତେବେଳେ ଆଜିକାର ଓଡ଼ିଶା ପ୍ରଦେଶ ଗଠନ ହୋଇ ନଥିଲା ।

ଯୁଗ ଦାସ ଓ ଭୀମ ଭୋଇଙ୍କ ଜୀବନ ଦର୍ଶନର ମାର୍ଗ ଅଲଗା ଥିଲା । ଯୁଗଦାସ ସାକାର ଉପାସନାରେ ନିମଗ୍ନ ଥିଲାବେଳେ ଭୀମ ଭୋଇଙ୍କ ଦେବତା ନିରାକାର, ନିର୍ଗୁଣ, ନିରଞ୍ଜନ ଥିଲେ ।

ଯୁଗ ଦାସ ଅଧୁନା ନବଗଠିତ ବରଗଡ଼ ଜିଲ୍ଲାର ଅଧିବାସୀ ଥିଲାବେଳେ ଭୀମ ଭୋଇ ପୂର୍ବତନ ଗଡ଼ଜାତ ରାଜ୍ୟ ସୋନପୁରର ଅଧିବାସୀ ଥିଲେ ।

ଯୁଗ ଦାସଙ୍କ ସଠିକ ଜନ୍ମ ଓ ମୃତ୍ୟୁ ଦିବସ ଏପର୍ଯ୍ୟନ୍ତ ନିର୍ଦ୍ଧାରିତ ହୋଇ ପାରିନାହିଁ । କେବଳ ସେ ସପ୍ତଦଶ ଶତାବ୍ଦୀରେ ନୃସିଂହ ଚରିତ ରଚନା କରିଥିବା ସୂଚନା ମିଳୁଛି ।

ଭୀମଭୋଇ ୧୮୫୦ ମସିହା ବୈଶାଖ ପୂର୍ଣ୍ଣମୀ ଦିନ ଜନ୍ମଗ୍ରହଣ କରି ୧୮୯୫ ମସିହା ଶିବ ଚତୁର୍ଦ୍ଦଶୀ ଦିନ ମୃତ୍ୟୁବରଣ କରିଥିଲେ । ସୋନପୁର ରାଜ୍ୟର ଖଲିଆପାଲି ଗ୍ରାମରେ ତାଙ୍କର ସମାଧି ମନ୍ଦିର ନିର୍ମିତ ହୋଇଛି ।

## କବି ଯୁଗ ଦାସ (ଯୋଗ ଦାସ)

ନୃସିଂହ ଚରିତର ରଚୟିତା ଯୁଗ ଦାସଙ୍କ ପିତାମାତା, ବାଲ୍ୟକାଳ, ଶିକ୍ଷା ସମ୍ପର୍କରେ ଏପର୍ଯ୍ୟନ୍ତ କିଛି ସୂଚନା ମିଳିନାହିଁ । ତାଙ୍କ ଦ୍ୱାରା ରଚିତ 'ନୃସିଂହ ଚରିତ' ପୋଥିରେ ସେ ତାଙ୍କ ସମ୍ପର୍କରେ

ସାମାନ୍ୟ ସୂଚନା ଛାଡ଼ି ଯାଇଛନ୍ତି । ଏତଦ୍‌ବ୍ୟତୀତ ବୋଡ଼ାସମ୍ବର ଜମିଦାର ରାଜେନ୍ଦ୍ର ସିଂହ ବରିହାଙ୍କ ନାମରେ ଭଣିତା ହୋଇଥିବା 'ନୃସିଂହ ମାହାତ୍ମ୍ୟ' ଗ୍ରନ୍ଥରୁ କନ୍ଧକବି ଯୁଗ ଦାସଙ୍କ ସମ୍ପର୍କରେ ସାମାନ୍ୟ ସୂଚନା ମିଳିଥାଏ । ଏହି 'ନୃସିଂହ ମାହାତ୍ମ୍ୟ' ଗ୍ରନ୍ଥ ବିଂଶ ଶତାବ୍ଦୀର ପ୍ରଥମ ଦଶକରେ ଅର୍ଥାତ୍ ୧୯୦୮ ମସିହାରେ ପ୍ରକାଶିତ । ନୃସିଂହ ମାହାତ୍ମ୍ୟର ପ୍ରଣେତା ୧୫୭ ପୃଷ୍ଠାରେ ନିମ୍ନ ମତେ ଉଲ୍ଲେଖ କରି ଅଛନ୍ତି-

ଯୋଗ ଦାସ ନାମେ ଏକ **କନ୍ଧକବି** ଥିଲେ
ନୃସିଂହ ଚରିତାବଳୀ ଟିପଣୀ ସେ କଲେ ।
ବଡ଼କଷ୍ଟେ ଟିପଣୀ ସେ କରିଥିଲେ ସୃଷ୍ଟି
ସେ ଚରିତ ନେଇ ମୁହିଁ ଗ୍ରନ୍ଥ କଲି ସୃଷ୍ଟି ।

ଯୋଗ ଦାସ ବା ଯୁଗ ଦାସଙ୍କ ହାତ ଲେଖା ଟିପଣୀକୁ ନେଇ ବା ଯୋଗ ଦାସ/ ଯୁଗ ଦାସଙ୍କ 'ନୃସିଂହ ଚରିତ' ପୋଥିର କଥା ବସ୍ତୁକୁ ନେଇ ବୋଡ଼ାସମ୍ବର ଜମିଦାର ରାଜେନ୍ଦ୍ର ସିଂହ ବରିହା 'ନୃସିଂହ ମାହାତ୍ମ୍ୟ' ଗ୍ରନ୍ଥ ରଚନା କରିଥିବା ସ୍ୱୀକାର କରିଛନ୍ତି । ଏଥିରୁ ଜଣାଯାଏ ଯେ, କବି ଯୁଗ ଦାସ ହିଁ ନୃସିଂହନାଥର ମାର୍ଜାର କେଶରୀଙ୍କ ସମ୍ପର୍କରେ ସର୍ବ ପ୍ରଥମେ ଗ୍ରନ୍ଥ ରଚନା କରିଥିଲେ । ତାଙ୍କ ପରେ ତାଙ୍କରି ପୋଥିର ଅନୁସରଣରେ ନୃସିଂହ ନାଥର ''ମାର୍ଜାର କେଶରୀ''ଙ୍କ ବିଷୟରେ ଅନ୍ୟାନ୍ୟ ଗ୍ରନ୍ଥ ରଚିତ ହେଲା ।

ଉଲ୍ଲେଖନୀୟ ଯେ, କବି ଯୁଗ ଦାସ କନ୍ଧ କୁଳରେ ଜନ୍ମଗ୍ରହଣ କରିଥିଲେ ମଧ୍ୟ କନ୍ଧମାନଙ୍କର କୁଇ ବା କୁଭି ଭାଷା ବ୍ୟବହାର ନ କରି ଓଡ଼ିଆ ଭାଷାରେ ଗ୍ରନ୍ଥ ରଚନା କରିଛନ୍ତି । ବୋଡ଼ାସମ୍ବର-ପଦମ୍ପୁର

ଅଞ୍ଚଳରେ ବାସ କରୁଥିବା ଆଦିବାସୀ ସଂପ୍ରଦାୟର ଲୋକମାନେ ସ୍ଥାନୀୟ ଓଡ଼ିଆ ଭାଷାରେ ଚଳପ୍ରଚଳ ହୋଇଥାନ୍ତି । କବି ଯୋଗ / ଯୁଗ ଦାସଙ୍କ ନୃସିଂହ ଚରିତ ଓଡ଼ିଆ ଭାଷାରେ ରଚିତ ହୋଇଥିଲେ ମଧ୍ୟ, ସେଥିରେ ସ୍ଥାନୀୟ କୋଶଲୀ- ସମ୍ବଲପୁରୀ ଭାଷା ଓ ଶବ୍ଦାବଳୀର ବହୁଳ ପ୍ରୟୋଗ କରାଯାଇଛି ।

ଯୁଗ ଦାସ ଯେ ଓଡ଼ିଆ ଭାଷାରେ ଜ୍ଞାନ ଅର୍ଜନ କରି ଲେଖି ପଢ଼ି ପାରୁଥିଲେ ଏହା ତାଙ୍କର ଗ୍ରନ୍ଥ ରଚନାରୁ ସାବ୍ୟସ୍ତ ହୋଇଥାଏ । ପୁଣି ସେ ନିଜ ହାତରେ ତାଳପତ୍ର ପୋଥି ଲେଖିବାରେ ସମର୍ଥ ଥିଲେ ।

## କବି ଯୁଗଦାସଙ୍କ ସମୟ

''ଶ୍ରୀ ନୃସିଂହ ନାଥ : ତତ୍ତ୍ୱ, ମନ୍ଦିର ଓ କ୍ଷେତ୍ର ପରିଚୟ''

ପୁସ୍ତକର ଲେଖକ ଶ୍ରୀ ନିରାକାର ମହାଲିକ ଉଲ୍ଲେଖ କରିଛନ୍ତି ଯେ, କବି ଯୁଗ ଦାସ ଦୁର୍ଗେଇ ଖୋଲ ନିକଟସ୍ଥ 'ମନଭଙ୍ଗା' ଗାଁରେ ବସବାସ କରୁଥିଲେ । ସେଠାରେ ମିଳିଥିବା 'ନୃସିଂହ ଚରିତ' ତାଳପତ୍ର ପୋଥିରେ ନିମ୍ନଲିଖିତ ମତେ ଉଲ୍ଲେଖ ଅଛି ।

''ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟୀ
କର୍ଣ୍ଣାଟୋତ୍କଳ ବର୍ଗେଶ୍ୱର ଶ୍ରୀ ଶ୍ରୀ ମୁକୁନ୍ଦ ଦେବ
ମହାରାଜାଙ୍କ ବିଜୟ ଶୁଭ ରାଜ୍ୟେ ୧୯୦ ବରଷରେ
ପୁସ୍ତକ ବଢ଼ିଲା । ଏ ପୁସ୍ତକ ବଢ଼ି ଶ୍ରାବଣ ମାସରେ
ସପ୍ତମୀ ଦିନ ବେଳ ଦଶଘଡ଼ି ଦୁଇ ଦଣ୍ଡଠାରେ ସମ୍ପୂର୍ଣ୍ଣ
ହେଲା । ରଇବାର ଦିନ ସମ୍ପୂର୍ଣ୍ଣ ହେଲା ।''

ଏଥିରେ ଉଲ୍ଲେଖ ଥିବା ମୁକୁନ୍ଦ ଦେବ ମହାରାଜଙ୍କ ସମୟ ହେଉଛି ୧୫୧୧-୧୫୬୮ । ୧୫୬୮ ରୁ ୧୯୦ ବର୍ଷ ହିସାବକୁ ନେଲେ ଏ ପୋଥି ୧୭୫୮ ଖ୍ରୀଷ୍ଟାବ୍ଦରେ ଯୁଗ ଦାସଙ୍କ ଦ୍ୱାରା ସମ୍ପୂର୍ଣ୍ଣ ହୋଇଥିବା ଜଣା ପଡୁଛି ।

କବି ଯୁଗ ଦାସ ପରିଣତ ବୟସରେ ''ନୃସିଂହ ଚରିତ' ଗ୍ରନ୍ଥ ରଚନା କରିଥିବେ । ତେଣୁ ସେ ସପ୍ତଦଶ ଶତାବ୍ଦୀର ଶେଷ ପାଦରେ ଜନ୍ମଗ୍ରହଣ କରିଥିବା ସମ୍ଭବ ।

କବି ଯୁଗ ଦାସଙ୍କ ସ୍ୱରଚିତ 'ନୃସିଂହ ଚରିତ'ରେ ତାଙ୍କର ସମୟ ସମ୍ପର୍କରେ କୌଣସି ସୂଚନା ଦେଇ ନାହାନ୍ତି ।

ଶ୍ରୀ ଶ୍ରୀ ନରସିଂହନାଥ ମନ୍ଦିର ପରିଚାଳନା ସମିତି ପକ୍ଷରୁ ଅଧ୍ୟାପକ ଶ୍ରୀ ନାରାୟଣ ପୃଷ୍ଟେଠ୍‌ଙ୍କ ଦ୍ୱାରା ସମ୍ପାଦିତ ''ଶ୍ରୀ ନୃସିଂହ ଚରିତ'' ଗ୍ରନ୍ଥ ପ୍ରକାଶ ପାଇଛି । ଏଥିରେ (ପୃଷ୍ଠା - ୧୮-୧୯ / ତୃତୀୟ ସଂସ୍କରଣ ୧୯୮୨) ଅଧ୍ୟାପକ ପୃଷ୍ଟେଠ ନିମ୍ନଲିଖିତ ମତେ ଉଲ୍ଲେଖ କରିଛନ୍ତି-

କବି ଯୋଗ ଦାସ ନୃସିଂହନାଥ ମନ୍ଦିରର ମୂଳ ପୂଜାରୀ ହରିଶବର ବଂଶଧର ଏବଂ ସେ ଜାତିରେ କନ୍ଧ ଥିଲେ । ଯେତେଦୂର ସମ୍ଭବ ସେ ନରସିଂହ ନାଥ କିମ୍ବା ତା' ପାଖରେ ବସବାସ କରୁଥିଲେ ।

ଜନଶ୍ରୁତିରୁ ଜଣାଯାଏ, ଏଇ କବି ଭୋଜରାଜାଙ୍କ ସମୟରେ ବାସ କରୁଥିଲେ । ଇତିହାସ ପୃଷ୍ଠାରୁ ଭୋଜରାଜାଙ୍କ ସମୟ ଅଦ୍ୟାବଧି ସଠିକ ଭାବରେ ସଂଗ୍ରହ କରାଯାଇ ପାରିନାହିଁ ।

ବୋଡ଼ା ସମ୍ବର ଓ ନରସିଂହ ନାଥଙ୍କ ସହିତ ତିନିଜଣ ଭୋଜରାଜା ସମ୍ପୃକ୍ତ । ମାତ୍ର ଠିକ୍ କେଉଁ ଭୋଜରାଜାଙ୍କ ସମୟରେ ଏହା ରଚିତ ତାହା

ନ ସୂଚାଇ ରାଜେନ୍ଦ୍ର ସିଂହ ବରିହା "ନୃସିଂହ ମାହାତ୍ମ୍ୟ"- ୩୮-୪୦ରେ ଲେଖିଛନ୍ତି-

ପୂଜାହାରୀଙ୍କୁ ନିକଟେ ରାଇଣ ରାଜନ
ନୃସିଂହଙ୍କ ଇତିହାସ କରିଲେ ପ୍ରଶନ
କେହି କହି ନ ପାରିଲେ ପୁରାତନ କଥା
ତାହା ଚାହିଁ ଭୋଇଙ୍କର ମନେ ଜାତ ବ୍ୟଥା ।
ଯୋଗ ଦାସ ନାମେ ଏକ କବି ଥିଲେ ତହିଁ
ତାହାଙ୍କୁ ଆଦେଶ ଦେଲେ ଭୋଇରାଜା ଚାହିଁ ।
ଏଥିର ପୂର୍ବ ଚରିତ ତୁମ୍ଭେ ଯେବେ ଜାଣ
ଲେଖିକରି ଗ୍ରନ୍ଥଗୋଟି ମୋ ନିକଟେ ଆଣ ।
ଯୋଗ ଦାସ ସ୍ୱଭାବରେ କନ୍ଧ ଜାତି ଥିଲେ
ଟିପଣୀ ରୂପେ 'ନୃସିଂହ ଚରିତ' ଲେଖିଲେ ।
ଆମୂଳ କରି ଜାଣିଲେ ନୃସିଂହ ମହିମା
ଅଧିକ ଆନନ୍ଦ ହେଲେ ତହୁଁ ମହାତମା ।
କବିଙ୍କର ସମାଦର କରିଲେ ଅପାର
କେତେଦିନ ରହିଲେ ତହିଁ କରି ଘର ।
(ନୃସିଂହ ମାହାତ୍ମ୍ୟ- ୩୮-୪୦)

ବୋଡ଼ାସମ୍ବର ଓ ନୃସିଂହନାଥଙ୍କ ସହିତ ସମ୍ପୃକ୍ତ ତିନିଜଣ ଭୋଇରାଜାଙ୍କ ମଧ୍ୟରୁ ପ୍ରଥମ ଜଣକ ବୋଡ଼ାସମ୍ବରର ଜମିଦାର

ଭୋଇରାଜ ବରିହା । ତାଙ୍କର ସମୟ ହେଲା- ଖ୍ରୀ : ୧୨୨୩ରୁ ୧୨୮୨ ଖ୍ରୀଷ୍ଟାବ୍ଦ ।

ଦ୍ୱିତୀୟ ଭୋଇରାଜ ହେଉଛନ୍ତି ପାଟଣାର ରାଜା । ତାଙ୍କର ସମୟ ଖ୍ରୀ : ୧୪୧୩ ଠାରୁ ୧୪୪୭ ଖ୍ରୀଷ୍ଟାବ୍ଦ ।

ତୃତୀୟ ଭୋଇରାଜ ହେଉଛନ୍ତି ବୋଡାସମ୍ବର ଜମିଦାର ମନ୍ଦା ବରିହାଙ୍କ ଭାଇ ଭୋଇରାଜ ବରିହା । ତାଙ୍କର ସମୟ ଖ୍ରୀ : ୧୫୫୦ ଠାରୁ ୧୫୭୭ ଖ୍ରୀଷ୍ଟାବ୍ଦ । ଏହି ଭୋଇରାଜ ସାହିତ୍ୟ ପ୍ରେମୀ ଥିଲେ । ପଦ୍ମପୁରଠାରୁ ୧୮ ମାଇଲ ଦକ୍ଷିଣ ପଶ୍ଚିମରେ ଥିବା 'ଭୋଇପୁର ଗଡ଼' ଦ୍ୱିତୀୟ ଭୋଇରାଜଙ୍କ ସମୟରେ, ଅଥାତ୍ ପାଟଣାର ରାଜାଙ୍କ ସମୟରେ ନିର୍ମିତ ହୋଇଥିଲା । ଭୋଇରାଜ ବରିହା ଏହି ଗଡ଼ରେ ପରବର୍ତ୍ତୀ କାଳରେ ରହିଥିଲେ ବୋଲି ଜଣାଯାଏ । ଅବଶ୍ୟ ଇତିହାସର ଚକ୍ରଘୂର୍ଣ୍ଣନରେ ଏହି ଗଡ଼ଟି ବର୍ତ୍ତମାନ ଏକ ମାଟିସ୍ତୂପ ଭାବେ ପଡ଼ି ରହି କେବଳ ଅତୀତର ବେଦନାକ୍ତ ରୋମନ୍ଥନ କରୁଛି । ସମ୍ଭବତଃ ଏହାଙ୍କ ସହିତ କବି ଯୋଗ ଦାସଙ୍କ ସାକ୍ଷାତ ହୋଇଥାଇପାରେ । ଏହାକୁ 'ନୃସିଂହ ଚରିତ'ର ରଚନାକାଳ ବୋଲି ଅନୁମାନ କରିବାର କାରଣ ହେଉଛି, 'ମନଭଙ୍ଗ'ରେ ଥିବା ପୋଥିର ଉଦ୍ଧୃତାଂଶ ।

ମୁକୁନ୍ଦ ଦେବଙ୍କ ରାଜତ୍ୱ ସମୟ ହେଉଛି ୧୫୧୧- ୧୫୬୮ । ଏହି ସମୟଟି ମନ୍ଦା ବରିହାଙ୍କ ରାଜତ୍ୱ ସମୟ ସଙ୍ଗରେ ଖାପ ଖାଉଛି ।

ଏହି କାରଣରୁ କବି ଯୋଗ ଦାସଙ୍କ ସମୟ ସପ୍ତଦଶ ଶତାବ୍ଦୀ ବୋଲି ବିବେଚନା କରାଯାଉଛି ।

# ନୃସିଂହ ଚରିତରେ ଯୁଗଦାସଙ୍କ ସ୍ୱ ପରିଚିତି

'ନୃସିଂହ ଚରିତ' ଗ୍ରନ୍ଥରୁ ବୈଷ୍ଣବ କବି ଯୁଗ ଦାସଙ୍କ ସମ୍ପୂର୍ଣ୍ଣ ପରିଚୟ ମିଳେନାହିଁ। ଏହି ଗ୍ରନ୍ଥର ଶେଷାଂଶରେ, ୧୪୭ ପୃଷ୍ଠାରେ ଯୁଗ ଦାସ ନିଜର ସ୍ୱଳ୍ପ ପରିଚୟ ଦେଇ ଲେଖିଛନ୍ତି-

''ଜାତିରେ ହୀନ ମୁଁ ଯେ ଅଟଇଁ ସିନା କନ୍ଧ
ମୁହିଁ କାହୁଁ ଜାଣିବି ଯେ ସଂସକୃତ ପଦ।
ପରାକୃତ ଭାଷାରେ ମୁଁ କଲଇଁ ଲେଖନ
ଭୋ ସାଧୁ ସୁଗ୍ୟଁଜନେ ଦୋଷ ମୋ ନଘେନ।
ଆଗରେ ପୁରାଣ ଯେ ପୁରୁଯା ରୂପେ ଥିଲା
କଳିଯୁଗେ ଯୁଗ ଦାସ ବିଖ୍ୟାତ ଯେ କଲା।
ହରି ଶବର ବଂଶେ ମୁଁ ହୋଇଲଇଁ ଜାତ
ତେଣୁ କରି ଲେଖିଲି ମୁଁ ନୃସିଂହ ଚରିତ।''

ଏଥିରୁ ଏତିକି ମାତ୍ର ଜଣାପଡୁଛି ଯେ, କବି ଯୁଗଦାସ ହରି ଶବରର ବଂଶଧର ଥିଲେ। ସେ ନିଜକୁ ଜାତିରେ ହୀନ କନ୍ଧ ବୋଲି ପରିଚୟ ଦେଇଛନ୍ତି ଓ କହିଛନ୍ତି ଯେ, ସଂସ୍କୃତ ଭାଷା ଜାଣି ନଥିବାରୁ କଥିତ ପ୍ରାକୃତ (ପରାକୃତ) ଭାଷାରେ ନୃସିଂହ ଚରିତ ରଚନା କଲେ। ସେଥିପାଇଁ ସେ ସାଧୁ ଓ ସୁଜ୍ଞଜନମାନଙ୍କୁ ତାଙ୍କୁ ଦୋଷ ନ ଦେବା ପାଇଁ ଅନୁରୋଧ କରି ଅଛନ୍ତି। ହରି ଶବର ବଂଶରେ ଜାତ ହୋଇଥିବାରୁ ନୃସିଂହ ଚରିତ ଲେଖିଲେ ବୋଲି ଯୁଗ ଦାସ ପ୍ରକାଶ କରି ଅଛନ୍ତି।

କବି ପୁଣି ସ୍ୱୀକାର କରିଛନ୍ତି ଯେ, ନୃସିଂହ ଚରିତ ପୋଥିକୁ ସେ ନିଜ ମନରୁ କଳ୍ପନା କରି ଲେଖି ନାହାନ୍ତି । ନୃସିଂହନାଥଙ୍କ ସମ୍ବନ୍ଧରେ ଯେଉଁ ପ୍ରକାର ପୁରୁଯା (କାହାଣୀ ବା କିମ୍ବଦନ୍ତୀ) ପ୍ରଚଳିତ ଥିଲା ତାକୁ ହିଁ ସେ ରୂପ ଦେଇଛନ୍ତି ।

କିମ୍ବଦନ୍ତୀରୁ ଜଣାଯାଏ, ପ୍ରାୟ ପାଞ୍ଚଶହ ବର୍ଷ ପୂର୍ବେ ହରିଶବର ଓ ସହଦେବ ଶବର ନାମରେ ଦୁଇ ଭାଇ ନୃସିଂହ ନାଥ ଅଞ୍ଚଳରେ ବାସ କରୁଥିଲେ । ହରିଶବରର ସ୍ତ୍ରୀର ନାମ 'ଯମୁନା' ଓ ସହଦେବ ଶବରର ସ୍ତ୍ରୀର ନାମ ରୋଦନା । ଏମାନେ ଗନ୍ଧଗିରି (ଗନ୍ଧମାର୍ଦ୍ଦନ) ଜଙ୍ଗଲରୁ ନାନା ପ୍ରକାର ବନ୍ୟଜାତ ଦ୍ରବ୍ୟ ସଂଗ୍ରହ କରି ଓ କନ୍ଦା, କନ୍ଦମୂଳ ଆଦି ଖୋଳି ଆଣି ଜୀବନ ଧାରଣ କରୁଥିଲେ ।

ଦିନେ ଯମୁନା ପିଠ କନ୍ଦା ଖୋଳିବାକୁ ନୃସିଂହନାଥ ପର୍ବତର "ପାପ ହରଣ" ନାଳ କୂଳରେ ପହଞ୍ଚିଲା । ସେଠାରେ ବେଲ ଗଛକୁ ମାଡ଼ିଥିବା ଏକ ପିଠାକନ୍ଦା ଗଛ ଦେଖିଲା । ଖୁଣ୍ଟୁଡା (ଖଣତି) ସାହାଯ୍ୟରେ ସେ ସେହି ପିଠାକନ୍ଦା ଖୋଳିବାକୁ ଆରମ୍ଭ କଲା । କିନ୍ତୁ ଖଣତି ଚୋଟ ବାଜିବାରୁ ପିଠାକନ୍ଦା ଦେହରୁ ରକ୍ତ ଝରିଲା । ଏହା ଦେଖି ଯମୁନା ଡ଼ରିଗଲା । ଭୂତ ପ୍ରେତର ଆଶଙ୍କା କରି ସେ ଘରକୁ ଫେରିଗଲା ଓ ସ୍ୱାମୀ ହରି ଶବର ଆଗରେ ସବୁକଥା ପ୍ରକାଶ କଲା ।

ଯମୁନାର ସ୍ୱାମୀ 'ହରିଶବର' ପତ୍ନୀ ମୁହଁରୁ ରକ୍ତ କଥା ଶୁଣି ସେହି ସ୍ଥାନ ନିଜେ ଯାଇ ପରୀକ୍ଷା କରି ଦେଖିବାକୁ ଚାହିଁଲା । ଯମୁନାକୁ ସଙ୍ଗରେ ନେଇ ହରି ଶବର "ପାପହରଣ ନାଳ" ପାଖକୁ ଗଲା ।

କିନ୍ତୁ ଆଶ୍ଚର୍ଯ୍ୟର କଥା, ଯମୁନା ଦେଖିଲା କିଛିକ୍ଷଣ ପୂର୍ବରୁ ଯେଉଁଠି ରକ୍ତ ବାହାରୁ ଥିଲା, ସେଇଠି କ୍ଷୀର ଝରୁଛି । ଏହା ସେ ନିଜ ସ୍ୱାମୀ ହରିଶବରକୁ ଦେଖାଇ ଦେଲା ।

ପତି ପତ୍ନୀ ଆଶ୍ଚର୍ଯ୍ୟ ହୋଇ ଅନେଇ ରହିଛନ୍ତି, ଶୂନ୍ୟବାଣୀ ହେଲା- ହରି ! ମୁଁ ତୋ ଉପରେ ସନ୍ତୁଷ୍ଟ ଅଛି । ମୁଁ ସ୍ୱୟଂ ବିଷ୍ଣୁ ନାରାୟଣ । ମୋତେ ନେଇ ପୂଜା କର । ମୂଷିକ ଦୈତ୍ୟର ସଂହାର ପାଇଁ ମୁଁ ମାର୍ଜାର କେଶରୀ ରୂପେ ଏଠାରେ ଅପେକ୍ଷା କରି ରହିଛି ।

ହରି ଓ ଯମୁନା ସେହି ସ୍ଥାନରେ ସ୍ତମ୍ଭୀଭୂତ ଭାବରେ ଛିଡ଼ା ହୋଇ ରହିଛନ୍ତି, ଗାତ ମଧ୍ୟରୁ କଳା ମୁଗୁନି ପଥରର ବିରାଡ଼ି (ମାର୍ଜାର) ମୂର୍ତ୍ତିଟିଏ ବାହାରିଲା ।

ହରି ଶବର ମୂର୍ତ୍ତି ନେଇ ବସାକୁ ଫେରିଲା । କିନ୍ତୁ ଦୈନନ୍ଦିନ ପୂଜା ପାଇଁ ତା' ପାଖରେ ସମ୍ବଳ କାହିଁ ? ତେଣୁ ସେ ସେହି ମୂର୍ତ୍ତି.. ନେଇ ପାଟଣା ରାଜ୍ୟର ତତ୍କାଳୀନ ରାଜା ବଜଇ ସିଂହ (ବ୍ରଜ ସିଂହ)ଙ୍କୁ ଦେଖା କଲା ଓ ସବୁ ବିଷୟ ଜଣାଇଲା ।

ପାଟଣା ମହାରାଜା ବଜଲ ସିଂହ ଜଣେ ଧର୍ମପରାୟଣ ବ୍ୟକ୍ତି ଥିଲେ । ସେ ହରିଶବର କଥାରେ ବିଶ୍ୱାସ କରି ଦେବତାଙ୍କ ପାଇଁ ମନ୍ଦିର ନିର୍ମାଣ କରାଇଲେ ଓ ମୂର୍ତ୍ତିକୁ ସେଠାରେ ପ୍ରତିଷ୍ଠା କଲେ ।

ମୂର୍ତ୍ତି ମନ୍ଦିରକୁ ଆସିବା ଆଗରୁ ହରି ଶବର ଘରେ ପୂଜା ପାଉଥିଲେ । ହରି ଶବର ବନ୍ୟଜାତ ସୁସ୍ୱାଦୁ ଫଳମୂଳ ଦେଇ ତାଙ୍କର ସେବା ପୂଜା କରୁଥିଲା । ମୂର୍ତ୍ତି ମନ୍ଦିରରେ ପ୍ରତିଷ୍ଠା ହେବା ପରେ ମଧ୍ୟ ପୂଜାରୀ ହୋଇ ପାର୍ଶ୍ୱବର୍ତ୍ତୀ ଜଙ୍ଗଲଜାତ ଆମ୍ବ, ପଣସ, ନାରଙ୍ଗୀ ଆଦି ଋତୁ ସମ୍ଭବ ଫଳ ଓ ମୂଳ ଦେଇ ତାଙ୍କର ପୂଜା କଲା ।

ହରି ଶବର ପରେ ତାର ବଂଶଧରମାନେ ଠାକୁରଙ୍କ ପୂଜା କଲେ । କିଛି କାଳ ପରେ ନାଗା ବୈଷ୍ଣବ ସନ୍ନ୍ୟାସୀ ଗୋପାଳ ଦାସ ନାମକ ଜଣେ ବ୍ରାହ୍ମଣ ଠାକୁରଙ୍କ ସେବା ପୂଜା ଦାୟିତ୍ୱ ଗ୍ରହଣ କଲେ । ତାଙ୍କ ଦେହାନ୍ତ ପରେ ଶିଷ୍ୟ ପ୍ରଶିଷ୍ୟମାନେ ଦୁଇ ତିନି ପୁରୁଷ ଧରି ଦେବତାଙ୍କ ସେବା ପୂଜା ଦାୟିତ୍ୱ ନିର୍ବାହ କରିଥିଲେ ।

ବହୁଦିନ ପରେ ଗୋପାଳ ଦାଶଙ୍କ ଜଣେ ପ୍ରଶିଷ୍ୟ ଠାକୁରଙ୍କ ସେବାପୂଜା ନୀତି ସମ୍ଭାଳିବାରେ ଅକ୍ଷମତା ପ୍ରକାଶ କରିବାରୁ ତତ୍କାଳୀନ ବୋଡ଼ାସମ୍ବର ଜମିଦାର ମନ୍ଦିର ପରିଚାଳନା ଭାର ନିଜ ହାତକୁ ନେଇ, ବାସୁ ପଣ୍ଡା ନାମକ ଜଣେ ଆରଣ୍ୟକ ଗୋଷ୍ଠୀର ବ୍ରାହ୍ମଣଙ୍କୁ ମନ୍ଦିର ପୂଜାରୀ ରୂପେ ନିଯୁକ୍ତ କଲେ । ସେ ସମୟର ବନ୍ଦୋବସ୍ତ ରେକର୍ଡ଼ରେ ବାସୁପଣ୍ଡାଙ୍କ ନାମୋଲ୍ଲେଖ ଅଛି ।

ଶେଷରେ ଓଡ଼ିଶା ସରକାରଙ୍କ ଦେବୋତ୍ତର କମିଶନର ୧୯୫୨ ମସିହାରେ ଟ୍ରଷ୍ଟି ନିଯୁକ୍ତ କରି ଟ୍ରଷ୍ଟବୋର୍ଡ଼ ସାହାଯ୍ୟରେ ମନ୍ଦିର ପରିଚାଳନା କରୁ ଅଛନ୍ତି ।

## ଯୁଗ ଦାସଙ୍କ ନୃସିଂହ ଚରିତ ଓ ଯମୁନା କନ୍ଧୁଣୀ ପ୍ରସଙ୍ଗ

ଯୁଗ ଦାସଙ୍କ 'ନୃସିଂହ ଚରିତ' ପୋଥି ଉଦ୍ଧାର କରି ସରକାରଙ୍କ ଦେବୋତ୍ତର ବିଭାଗ ପକ୍ଷରୁ ନିଯୁକ୍ତ ଟ୍ରଷ୍ଟବୋର୍ଡ଼ ବା 'ନରସିଂହନାଥ ମନ୍ଦିର ପରିଚାଳନା ସମିତି' ଏହାକୁ ୧୯୭୦ ମସିହାରେ ମୁଦ୍ରଣ କରାଇଛନ୍ତି ।

''ନୃସିଂହ ଚରିତ' ଆଗେ ତାଳପତ୍ର ପୋଥି ଆକାରରେ ଥିଲା । ତହିଁରୁ ଗୋଟିଏ ପୋଥି 'ମନଭଙ୍ଗ' ଗ୍ରାମରେ ଓ ଅନ୍ୟ ଏକ ପୋଥି ବଇଦ ପାଲିରେ ଥିବା କଥା ଅଧ୍ୟାପକ ନାରାୟଣ ପୃଷେଠ୍ ତାଙ୍କ ଦ୍ୱାରା ସଂପାଦିତ ''ଶ୍ରୀ ନୃସଂହ ଚରିତ''ରେ ଉଲ୍ଲେଖ କରିଛନ୍ତି ।

ମନଭଙ୍ଗ ବା ବଇଦ ପାଲିରେ ଥିବା ତାଳପତ୍ର ପୋଥିରେ ଏହାର ରଚନା କାଳ ବା ଅନ୍ୟ କୌଣସି ସମୟର ସୂଚନା ନାହିଁ । ମାତ୍ର ବଇଦ ପାଲିରେ ଥିବା ୧୮୭ ଖଣ୍ଡ ତାଳପତ୍ର ବିଶିଷ୍ଟ ପୋଥିରେ ଶେଷାଂଶରେ ଲେଖାଯାଇଛି ଯେ, ''୧୩୧୩ ସାଲରେ ପୁସ୍ତକ ବଢ଼ିଲା ।'' ଏଥିରୁ କେତେକ ଅନୁମାନ କରନ୍ତି ଯେ, ଏହି ପୁସ୍ତକ (ନୃସିଂହ ଚରିତ)ର ରଚନା କାଳ ୧୩୧୩ ସାଲ ବା ୧୯୦୩ ଖ୍ରୀଷ୍ଟାବ୍ଦ । ମାତ୍ର ଏହି ସିଦ୍ଧାନ୍ତ ତୃଟିପୂର୍ଣ୍ଣ ଅଟେ । କାରଣ ଏହା ମୂଳ ରଚନା ନୁହେଁ, ମୂଳ ରଚନାର ନକଲ ମାତ୍ର । ମୂଳ ରଚନାର ବହୁ ବର୍ଷ ପରେ ଲେଖନକାର ମୂଳ ରଚନାରୁ ଏହାକୁ ଉତାରି ଅଛନ୍ତି ।

ପୁନଶ୍ଚ ଯୁଗ ଦାସଙ୍କ ରଚିତ 'ନୃସିଂହ ଚରିତ' ଉପରେ ଆଧାର କରି ବୋଡ଼ାସମ୍ବର ଜମିଦାର ରାଜେନ୍ଦ୍ର ସିଂହ ବରିହା 'ନୃସିଂହ ମାହାତ୍ମ୍ୟ' କାବ୍ୟ ରଚନା କରିଥିଲେ । ତାଙ୍କ ଭୂମିକାରେ ସେ ଦର୍ଶାଇଛନ୍ତି, ''ଏହି ପ୍ରଗଣାର ଭୂତପୂର୍ବ କନ୍ଧ ଜାତୀୟ କବି ଶ୍ରୀଯୋଗଦାସଙ୍କ ରଚିତ ଟିପ୍ପଣୀରୁ ମୂଳ ବିବରଣୀ ଦେଇ 'ନୃସିଂହ ମାହାତ୍ମ୍ୟ' ଗ୍ରନ୍ଥ ଅକ୍ଷରରେ ପଦ୍ୟାକାରରେ ଗଠନ କରି ପ୍ରଣୟନ କରିଅଛୁଁ । ଯୋଗ ଦାସ କବି ଏହି ନୃସିଂହ ନାଥଙ୍କ ସମ୍ବନ୍ଧେ ଯାହାକିଛି ଲେଖିଥିଲେ, ତାହା ତାଳପତ୍ରରେ ପୂର୍ବ ଧରଣର କବିତା ରୀତିରେ ଲିଖିତ ହୋଇଥିଲା ।

ଜମିଦାର ରାଜେନ୍ଦ୍ର ସିଂହ ବରିହାଙ୍କ ଲିଖିତ ପୁସ୍ତକର ପ୍ରକାଶ କାଳ ୧୯୦୮ ମସିହା । ଯଦି 'ନୃସିଂହ ଚରିତ' ପୋଥି ୧୯୦୩ ମସିହାରେ ଲେଖା ଯାଇଥାନ୍ତା ତାହା ହେଲେ ଯୋଗଦାସଙ୍କ ପୁସ୍ତକର ଟିପ୍ପଣୀ ଗ୍ରହଣ କରି ଆଉ ଏକ ପୁରାଣ ରଚନା କରି ପ୍ରକାଶ କରିବାର ଆବଶ୍ୟକତା ନଥିଲା । ବରିହା ମହାଶୟ ଯୁଗ ଦାସଙ୍କ 'ନୃସିଂହ ଚରିତ' ପୋଥିକୁ ପ୍ରକାଶ କରିଥାନ୍ତେ ।

ଏଥିରୁ ଜଣାଯିବ ଯେ, କବି ଯୁଗ ଦାସ ବରିହା ମହାଶୟଙ୍କ ସମକାଳୀନ ନୁହନ୍ତି କି ସେ ୧୯୦୩ ମସିହାରେ ନୃସିଂହ ଚରିତ ରଚନା କରି ନଥିଲେ । ନୃସିଂହ ଚରିତ ୧୯୦୩ ମସିହାର ବହୁପୂର୍ବରୁ ରଚନା କରାଯାଇଥିଲା ।

ଜନଶ୍ରୁତି ଅନୁସାରେ କନ୍ଧ କବି ଯୁଗ ଦାସ ଭୋଜରାଜଙ୍କ ସମୟରେ ବାସ କରୁଥିଲେ । ଏହି ଭୋଜରାଜ ବୋଡ଼ାସମ୍ବର ଜମିଦାରଙ୍କ ଭାଇ ଥିଲେ ଓ ତାଙ୍କ ସମୟ ହେଉଛି ୧୫୫୦ ଠାରୁ ୧୫୭୭ ଖ୍ରୀଷ୍ଟାବ୍ଦ । ତେଣୁ କବି ଯୁଗ ଦାସ ସପ୍ତଦଶ ଶତାବ୍ଦୀରେ ଜୀବିତ ଥିବା ଅନୁମାନ କରାଯାଏ ।

## ହରିଶବର ଓ ଯମୁନା କନ୍ଧୁଣୀ

ଯୁଗ ଦାସ ନିଜକୁ ନୃସିଂହ ନାଥଙ୍କ ଆଦ୍ୟ ପୂଜକ ହରିଶବରର ବଂଶଧର ବୋଲି ଘୋଷଣା କରିଛନ୍ତି । ନୃସିଂହ ଚରିତର ୧୫୭୫ ପଦରେ ସେ ଉଲ୍ଲେଖ କରିଛନ୍ତି-

ହରି ଶବର ବଂଶେ ମୁଁ ହୋଇଲିଁ ଜାତ
ତେଣୁ କରି ଲେଖିଲି ମୁଁ ନୃସିଂହ ଚରିତ । ୧୫୭୫ ।

ସେହିପରି ଶ୍ରୀରାମଚନ୍ଦ୍ର ନାରଙ୍ଗ ଫଳ ଆଣି ନୃସିଂହଙ୍କ ଶିରରେ ଚଢ଼ାଇ ତାଙ୍କୁ (ନୃସିଂହଙ୍କୁ) ନିମ୍ନମତେ କହିଛନ୍ତି-

''ନାରଙ୍ଗ କମଳାକୁ ଯତନେ ରଖିଥିବୁ
ଦ୍ୱାପର ଯୁଗରେ ହରିଶବରକୁ ଦେବୁ ।
ହରି ଶବର ଭାରିଯା ଯମୁନା ଶବରୁଣୀ
ତାହାକୁ ପ୍ରସନ ହେବୁ ଜାତିରେ କନ୍ଧୁଣୀ ।
କୁଣ୍ଡୋଇ ଖନତା ଘେନି କନ୍ଦା ଖୋଳିଯିବ
ପିଠକନ୍ଦା ଖୋଳୁଁ ତୋତେ ଯେ ପାଇବ ।
ତୋତେ ପାଇ ଆଣିବେ ଯେ ହରିନାଥ ରାଜା
ମନ୍ଦିର ତୋଳାଇଣ କରାଇବେ ପୂଜା ।

ପୁଣି ''ନୃସିଂହ ଚରିତ''ର ୧୩୯୮ ପଦରେ ଉଲ୍ଲେଖ ଅଛି-

ହୁଳ ହୁଳି ଦେଇଣ ଯମୁନା ଶବରୁଣୀ
ମୁଣ୍ଡରେ ବୋହିଲା ଯେ ପ୍ରଭୁଙ୍କୁ ବେଗେ ଆଣି ।
ବୈଶାଖ ମାସରେ ଯେ ପୂର୍ଣ୍ଣମୀର ଦିନ
ଶନିବାର ଦିନ ପ୍ରଭୁ ହୋଇଲେ ପ୍ରସନ ।
ଧନ୍ୟ ଶବରୁଣୀ ପୂର୍ବେ କେଉଁ ତପ କଲା
ବ୍ରହ୍ମାଣ୍ଡ ଠାକୁରକୁ ସେ ମୁଣ୍ଡରେ ବୋହିଲା । ୧୫୦୦ ।

ହରିଶବର ଯେ ପୁଣି ଖଣତିକୁ ଧରି
ପିଠକନ୍ଧା ଖୋଳି କାନ୍ଧେ ବହିଲା ବେଗେ କରି ।
ଖରତର ହୋଇଣ ଚଳିଲେ ବେନିଜନ
ପ୍ରବେଶ ହୋଇଲେ ଯେ ମଡ଼ିଆ ସନ୍ନିଧାନ ।
ମଡ଼ିଆ ଘରେ ନେଇ ଦେବତା ଭଳାଇଲେ
ପିଠକନ୍ଧା ଉଁଷାଇଣ ଭୋଗ ଲଗାଇଲେ ।
ପିଠକନ୍ଧା ଖାଅବୋଲି ବୋଇଲା ଶବର
ବାସନା ଘେନିଲେ ପ୍ରଭୁ ବ୍ରହ୍ମାଣ୍ଡଠାକୁର ।
ଶବରୁଣୀ ବୋଇଲା ଯେ ଦେବତା ରଷିଲା
ପାଷାଣ ପ୍ରତିମା କାହିଁ ଖାଇବ ବୋଇଲା ।
ଶୁଣିକରି ନାରାୟଣ ଅଳପ ହସିଲେ
ବରମାଗି ଘେନ ବୋଲି ଶ୍ରୀମୁଖେ ବୋଇଲେ ।
ଶବରୁଣୀ ବୋଇଲା ମୁଁ କି ବର ମାଗିବଇ
ଶବରୁଣୀ ହୀନଜାତ କହି ନ ଜାଣଇଁ ।
ଶବରୁଣୀ ବୋଲେ ଦେବ ଯେବେ ବର ଦେବ
ମୋ ଖନତି ଚିହ୍ନ ତୁମ ଶିରେ ରହିଥିବ ।
ମୋର ଜାତି ହୋଇଥିବେ ତୁମ୍ଭର ପୂଜାରୀ
ଅଧିକ ଜଣାଇବି ସଭାବେ ମୁଁ ସ୍ତିରୀ ।
ତୁମ୍ଭର ମନ୍ଦିର ଅଗ୍ନିକୋଣେ ମୁହିଁ ଥିବି
ଏହି ଦେହେ ଯୁଗେ ଯୁଗେ ଦ୍ୱାରୀ ମୁହିଁ ହେବି । ୧୪୧୦ ।

ଏଠାରେ ଯମୁନା କନ୍ଧୁଣୀ ଓ ହରିଶବର ଠାକୁରଙ୍କୁ ପାଇବା ପରେ ତାଙ୍କୁ ଘରକୁ ବୋହି ଆଣି ମଡ଼ିଆ ବା ମଣ୍ଡପରେ ରଖି ପୂଜା କରିଥିବା ସମ୍ବାଦ ରହିଛି ।

ଏଥିରୁ ପ୍ରମାଣିତ ଯେ, ମାର୍ଜାର କେଶରୀ ଶବର ପୂଜିତ ଦେବତା । ନୃସିଂହନାଥ ଅଞ୍ଚଳରେ ବସବାସ କରୁଥିବା ଆଦିବାସୀ ଗୋଷ୍ଠୀର ଲୋକମାନେ ମାର୍ଜାର କେଶରୀଙ୍କ ପୂଜା ଉପାସନା କରି ଆସୁଥିଲେ । ପରେ ନୃସିଂହ ନାଥ ମନ୍ଦିରରେ ତାଙ୍କୁ ପ୍ରତିଷ୍ଠା କରାଗଲା ।

ଶବର ପୂଜିତ ନୀଳମାଧବ ପରବର୍ତ୍ତୀ କାଳରେ ଜଗନ୍ନାଥ ରୂପେ ପରିଚିତ ହୋଇ ଆଦିବାସୀ ତଥା ଅଣଆଦିବାସୀ ସବୁ ସଂପ୍ରଦାୟର ଠାକୁର ପାଲଟିଲା ପରି, ନୃସିଂହନାଥ ମନ୍ଦିରରେ ମାର୍ଜାର କେଶରୀ ବା ବିଡ଼ାଳ ନୃସିଂହ ହିନ୍ଦୁମାନଙ୍କ ଦ୍ୱାରା ମଧ୍ୟ ପୂଜିତ ହେଲେ ।

ନୀଳମାଧବଙ୍କୁ ବସୁ ଶବର ବନ୍ୟଜାତ ଫଳମୂଳ ଦେଇ ପୂଜା କଲା ପରି ବିଡ଼ାଳ ନୃସିଂହଙ୍କୁ ବନ୍ୟଜାତ ପଦାର୍ଥ ଅର୍ପଣ କରି ହରିଶବର ଓ ଯମୁନା କନ୍ଧୁଣୀ (ଭୁଏ ବା ଭୋଏ) ଛାମୁଣ୍ଡିଆ ତଳେ ତାଙ୍କୁ ପୂଜା କରୁଥିଲେ ।

ନୀଳମାଧବ ରାଜାଙ୍କ ହସ୍ତକୁ ଆସିବା ପରେ ଷୋଡ଼ଶ ଉପଚାରରେ ପୂଜା ପାଇଲା ପରି ବିଡ଼ାଳ ଦେବତା ଜମିଦାରଙ୍କ ଦ୍ୱାରା ଅନ୍ନଭୋଗ ପାଇଲେ ।

ଶ୍ରୀଜଗନ୍ନାଥ ଦେଉଳ ନିର୍ମାତା ଇନ୍ଦ୍ରଦ୍ୟୁମ୍ନଙ୍କ ସେବା ପୂଜାରେ ତାଙ୍କୁ ବର ଯାଚି ଦେବା ପରି ବିଡ଼ାଳ ଦେବତା ଯମୁନା କନ୍ଧୁଣୀଙ୍କୁ ବର ଯାଚିବାରେ ସେ କହିଲା-

''ତୁମ୍ଭର ମନ୍ଦିର ଅଗ୍ନିକୋଣେ ମୁହିଁ ଥିବି
ଏହି ଦେହେ ଯୁଗେ ଯୁଗେ ଦ୍ୱାରୀ ମୁହିଁ ହେବି ।
ଯେଉଁ ଦିନ ଦଇବରେ ହୋଇବ ଗ୍ରହଣ
ପୁଣ୍ୟବନ୍ତ ପ୍ରାଣୀ ମୋତେ ପାଇବେ ଦର୍ଶନ । ୧୪୧୧ ।

ସେହିପରି ହରି ଶବର ବର ଛଳରେ ବିଡ଼ାଳ ନୃସିଂହଙ୍କୁ ନାରଙ୍ଗି ଫଳ ମାଗିଛି ।

ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପରି ହରି ଶବର କିମ୍ବା ଯମୁନା କନ୍ଧୁଣୀ ବିଡ଼ାଳ ନୃସିଂହଙ୍କୁ ସର୍ବନାଶୀ ବର ମାଗି ନାହାନ୍ତି ।

ଲୋକେ କହନ୍ତି, ଏବେ ମଧ୍ୟ ଚନ୍ଦ୍ର ଗ୍ରହଣ ଓ ସୂର୍ଯ୍ୟ ପରାଗ ପଡ଼ିଲେ ଯମୁନା କନ୍ଧୁଣୀ ନୃସିଂହ ନାଥ ନା ମାର୍ଜାର କେଶରୀଙ୍କୁ ସ୍ୱଦେହରେ ଦର୍ଶନ କରିବାକୁ ଆସେ । ପୁଣ୍ୟବାନ ଲୋକମାନେ ତା'ର ଦର୍ଶନ ଲାଭ କରିଥାନ୍ତି ।

## ହରି ଶବର ଓ ଯମୁନା କନ୍ଧୁଣୀ: ଆଦିବାସୀ ଜାତି ବିଚାର

ଆଦିବାସୀମାନଙ୍କୁ କଥିତ ଭାଷା ଭିତ୍ତିରେ ଦୁଇଟି ଗୋଷ୍ଠୀରେ ବିଭକ୍ତ କରାଯାଇଛି । ତାହା ହେଲା- ମୁଣ୍ଡା ଓ ଦ୍ରାବିଡ଼ (ମୁଣ୍ଡାରି ଓ ଦ୍ରାବିଡ଼)

ମୁଣ୍ଡାରି ଭାଷା ଉତ୍ତର ଭାରତୀୟ ଖେରୱାରୀ ଭାଷାରୁ ଉତ୍ପନ୍ନ । ସାନ୍ତାଳ, କୋହ୍ଲ, କିଷାନ, ଓରାଂ, ମୁଣ୍ଡା ଓ ହୋ'ମାନେ ମୁଣ୍ଡାରୀ (କୋହ୍ଲ) ଗୋଷ୍ଠୀ ଭୁକ୍ତ ।

ଦ୍ରାବିଡ଼ ଆଦିବାସୀ ଭାଷାରୁ କୁଇ, କୁଭି, ଅଲାରୀ, କିଶାନ ଓ ଓରାଂ ପ୍ରଭୃତି ଭାଷାର ସୃଷ୍ଟି । ଶଉରା, କନ୍ଧ, ଭୂୟାଁ, ଗଦବା, ପରେଙ୍ଗ, ଜୁଆଙ୍ଗମାନେ ଦକ୍ଷିଣ ଦ୍ରାବିଡ଼ ଗୋଷ୍ଠୀଭୁକ୍ତ । ଏମାନେ ସମସ୍ତେ ଦାକ୍ଷିଣାତ୍ୟ ବଂଶୋଦ୍ଭବ ।

ପଶ୍ଚିମ ଓଡ଼ିଶାର ବଲାଙ୍ଗୀର, ପାଟଣା, ବୌଦ ଓ କନ୍ଧମାଳ ଅଞ୍ଚଳରେ କନ୍ଧମାନେ ଅଧିକ ସଂଖ୍ୟାରେ ବାସ କରିଥାନ୍ତି । ଏମାନେ କୁଇ/ କୁଭି ଭାଷା ବ୍ୟବହାର କରନ୍ତି ।

କନ୍ଧମାନେ ତିନୋଟି ଗୋଷ୍ଠୀରେ ବିଭକ୍ତ- ଦେଶିଆ କନ୍ଧ, ଡଙ୍ଗରିଆ କନ୍ଧ ଓ କୁଟିଆ କନ୍ଧ ।

ବଲାଙ୍ଗୀର ଜିଲ୍ଲାର ଦେଶିଆ କନ୍ଧମାନେ ଅଣଆଦିବାସୀ ସଂପ୍ରଦାୟର ଲୋକଙ୍କ ସଙ୍ଗେ ଏକାଠି ରହି ମିଳିମିଶି ଚଳନ୍ତି ।

**ସମ୍ବଲପୁର ବରଗଡ଼ ଅଞ୍ଚଳର ବିଞ୍ଝାଲ ଗୋଷ୍ଠୀ**

ବିଞ୍ଝାଲ ଶବ୍ଦ ବିନ୍ଧ୍ୟ ବାସିନୀ ଶବ୍ଦରୁ ଉତ୍ପନ୍ନ । ବିନ୍ଧ୍ୟବାସିନୀ ଦେବୀ ବିଞ୍ଝାଲ ଗୋଷ୍ଠୀର ପରମ ପୂଜ୍ୟା ଅଟନ୍ତି । ଏମାନେ କହନ୍ତି, ବିନ୍ଧ୍ୟ ପର୍ବତମାଳା ଏମାନଙ୍କର ଆଦି ବାସସ୍ଥାନ ଥିଲା । ଏମାନେ ବାର ଭାଇ ଥିଲେ । ବାରହା ମାରିବାରେ ଏମାନେ ଧୂରନ୍ଧର ଥିଲେ । ତେଣୁ ବରିହା ଉପାଧି ଗ୍ରହଣ କରିଥିଲେ । ଏମାନେ ବାରଭାଇ ବେଣ୍ଟକାର ବଂଶଜ ବୋଲାଇଲେ ।

ବୋଡ଼ାସମ୍ବର ଜମିଦାର ବିଞ୍ଝାଲ ଗୋଷ୍ଠୀର ଓ ବାରଭାଇ ବେଣ୍ଟକାରଙ୍କ ବଂଶଧର । ଏମାନେ ଦ୍ରାବିଡ଼ ଗୋଷ୍ଠୀର ।

ବୋଡ଼ାସମ୍ବର ଜମିଦାର ନୃସିଂହନାଥ ମନ୍ଦିରରେ ବିଡ଼ାଳ ନୃସିଂହଙ୍କୁ ସ୍ଥାପନ କରିଥିବା କୁହାଯାଏ । ନୃସିଂହ ନାଥ ଘର ପାଖରେ ବିନ୍ଧ୍ୟ ବାସିନୀ ଦେବୀ ମଧ୍ୟ ପୂଜା ପାଉଛନ୍ତି । ନୃସିଂହନାଥଙ୍କ ନିକଟରେ ନିଶାନୀ ଦେବୀ ପୀଠରେ ପ୍ରତିବର୍ଷ ପାରମ୍ପରିକ ଧନୁତୀର ପ୍ରତିଯୋଗିତା ଅନୁଷ୍ଠିତ ହେଉଛି ।



ବରଗଡ ଜିଲ୍ଲାର ନୃସିଂହ ନାଥଙ୍କ ନିକଟରେ ''ନିଶାନୀ ଦେବୀ'' ପୀଠ ଠାରେ ପାରମ୍ପରିକ ଧନୁତୀର ପ୍ରତିଯୋଗିତା

ଯୋଗ ଦାସ (ଯୁଗ ଦାସ) ନିଜକୁ କନ୍ଧ ଓ ଶବର ଉଭୟ ଭାବରେ ପରିଚୟ ଦେଇ ଅଛନ୍ତି। ସେ କିନ୍ତୁ ହରି ଶବର ବଂଶରେ ଜନ୍ମଗ୍ରହଣ କରିଥିବା ପ୍ରକାଶ କରିଛନ୍ତି।

ହରି ଶବରର ପତ୍ନୀ ଯମୁନା କନ୍ଧୁଣୀ ମାର୍ଜାର କେଶରୀ ବିଗ୍ରହର ପ୍ରଥମ ଆବିଷ୍କାରକ।

ଦୁର୍ଗେଇ ଖୋଲ ନିକଟସ୍ଥ 'ମନଭଙ୍ଗ' ଗ୍ରାମରେ ବାସ କରଥିବା ନନ୍ଦ କିଶୋର ମଲ୍ଲିକ ହରି ଶବର ଓ ଯମୁନା କନ୍ଧୁଣୀର ବଂଶଧର ବୋଲି ପ୍ରକାଶ କରନ୍ତି। ଏମାନେ ହରି ଶବରଙ୍କ ବଂଶଧର ଯୁଗ ଦାସଙ୍କ ବିରଚିତ 'ନୃସିଂହ ଚରିତ' ତାଳ ପତ୍ର ପୋଥି ପାଖରେ ରଖିଛନ୍ତି ଓ ପୂଜା କରୁଛନ୍ତି।

କନ୍ଧ ସଂପ୍ରଦାୟରେ 'ମଲ୍ଲିକ' ସଂଜ୍ଞାର ପ୍ରଚଳନ ଅଛି। ହରି ଶବର ଯମୁନା କନ୍ଧୁଣୀର ସ୍ୱାମୀ ହୋଇଥିବାରୁ ନିଜକୁ କନ୍ଧଭାବରେ ପରିଚୟ ଦେଇଛନ୍ତି।

କିନ୍ତୁ ଆଦିବାସୀ ସଂପ୍ରଦାୟରେ ବିବାହ ପ୍ରଥାକୁ କଡ଼ାକଡ଼ି ଭାବରେ ପାଳନ କରାଯାଇଥାଏ।

ଶବରମାନେ ଗୋତ୍ର ଓ ବନ୍ଧୁ ନିୟମ ସହିତ ଜଡ଼ିତ। ଏମାନେ ସମଗୋତ୍ରରେ ବିବାହ ନ କରି ବନ୍ଧୁ ପରିବାରରେ ବିବାହ କରିବା ନିୟମ ଅଛି। ଶବର ଯୁବକ କେବଳ ଶବର ଜାତିର ବନ୍ଧୁଗୃହର କନ୍ୟାକୁ ବିବାହ କରିଥାଏ। ସେ କନ୍ଧ ସ୍ତ୍ରୀ ବିବାହ କରିବା ମନା।

ଏପରି ସ୍ଥଳେ ହରି ଶବର ଯମୁନା କନ୍ଧୁଣୀକୁ ବିବାହ କରିଥିବା ଏକ ବିଚିତ୍ର ବ୍ୟାପାର।

ସମ୍ଭବତଃ କବି ଯୁଗ ଦାସ ଆଦିବାସୀ ସଂପ୍ରଦାୟର ଗୋଷ୍ଠୀ ଗତ ବିଭେଦକୁ ବିଚାର ଆଲୋଚନାକୁ ନ ନେଇ ସମୁଦାୟ ଆଦିବାସୀ ସଂପ୍ରଦାୟକୁ 'ଶବର' ସଂପ୍ରଦାୟ ବୋଲି ଧରିନେଇ ପାରିଥାନ୍ତି ।

## ହରି ଶବର ବଂଶଜ ଯୁଗ ଦାସଙ୍କ 'ଦାସ' ସଂଜ୍ଞା

କବି ଯୁଗ ଦାସ ତାଙ୍କର ଆଦିବାସୀ ସଂପ୍ରଦାୟର ନିର୍ଦ୍ଧାରିତ ସଂଜ୍ଞା ବ୍ୟବହାର ନକରି ନିଜକୁ ଦାସ ରୂପେ ପରିଚୟ କରାଇଛନ୍ତି ।

ସେ ହରି ଶବରଙ୍କ ବଂଶଜ 'ମଲ୍ଲିକ' କିମ୍ବା ଯମୁନା ଭୋଏର 'ଭୋଏ' ସଂଜ୍ଞା ନିଜ ନାମ ସଙ୍ଗେ ଯୋଡ଼ି ନାହାନ୍ତି ।

ନିଜକୁ କବି ଯୁଗ ଦାସ ରୂପେ ପରିଚିତ କରିବାର ତାତ୍ପର୍ଯ୍ୟ ଏହି ଯେ, ସେ ବିଷ୍ଣୁଙ୍କ ଅବତାର ମାର୍ଜାର କେଶରୀଙ୍କ ଉପାସକ ଥିଲେ । ବିଷ୍ଣୁ ଉପାସକମାନେ ବୈଷ୍ଣବ ଧର୍ମ ଗ୍ରହଣ କଲାପରେ ତାଙ୍କର କୌଳିକ ସଂଜ୍ଞା ଧାରଣ ନକରି ଦାସ ସଂଜ୍ଞା ଧାରଣ କରୁଥିଲେ ।

ଏହି ଦାସ ଶବ୍ଦର ଅର୍ଥ ହେଲା, ଭଗବାନ ବିଷ୍ଣୁଙ୍କର ଦାସ ।

ଓଡ଼ିଶାର ପଞ୍ଚସଖା ବୋଲାଉଥିବା ବଳରାମ, ଜଗନ୍ନାଥ, ଅଚ୍ୟୁତାନନ୍ଦ, ଅନନ୍ତ ଓ ଯଶୋବନ୍ତ ନିଜର ବଂଶଗତ ସଂଜ୍ଞା ପରିହାର ପୂର୍ବକ ଦାସ ସଂଜ୍ଞା ଧାରଣ କରିଥିଲେ ।

କନ୍ଧ ବୈଷ୍ଣବ ଯୁଗ ଦାସ ସେହିପରି ଆଦିବାସୀ ସଂଜ୍ଞା ପରିହାର କରି ନିଜକୁ ଯୁଗ ଦାସ ଭାବରେ ହିଁ ପରିଚୟ ଦେଇଛନ୍ତି ।

ଯୁଗ ଦାସ ତାଙ୍କ ଜୀବନ କାଳ ମଧ୍ୟରେ କେବଳ 'ନୃସିଂହ ଚରିତ' ପୋଥି ଲେଖିଥିବା ସମ୍ଭବ । କାରଣ ତାଙ୍କର ଆଉ କୌଣସି ସୃଷ୍ଟି ଦୃଷ୍ଟି ପଥାରୁଢ଼ ହୋଇନାହିଁ ।

## ''ନୃସିଂହ ଚରିତ'' ଗ୍ରନ୍ଥର ପ୍ରାଚୀନତା

ସମ୍ପାଦକ ଶ୍ରୀ ପୃଷ୍ଟେଠ୍ 'ନୃସିଂହ ଚରିତ'ର ଭୂମିକାରେ ଉଲ୍ଲେଖ କରିଛନ୍ତି, ''ଗ୍ରନ୍ଥରେ ବ୍ୟବହୃତ ହୋଇଥିବା କେତେକ ଶବ୍ଦ ଏହାର ପ୍ରାଚୀନତାର ସ୍ମାରକୀ ହୋଇ ରହିଛି ।

ଗ୍ରନ୍ଥର ବିଭିନ୍ନ ସ୍ଥାନରେ କବି ଧାମନ୍ତି, ଶବଦେକ, ଯୁନ, ଯେବଣ, ସୋମେନ୍ଦ୍ର, ରହସି, ନିର୍ଭାକଲେ,ଥୋକାଏ, ରଞ୍ଜନା, ଚୟେଥେ, ଭାର୍ଜନ, ମାୟେସ, ପାରୂଶେ, ଆଞ୍ଜୋବନ, ପ୍ରଭୃତି ଅନେକ ପ୍ରାଚୀନ ଶବ୍ଦ ବ୍ୟବହାର କରିଅଛନ୍ତି । ଏହି ଶବ୍ଦଗୁଡ଼ିକ ସାରଳା ମହାଭାରତ ଓ ଅନ୍ୟାନ୍ୟ ପ୍ରାଚୀନ ଗ୍ରନ୍ଥ ଓ ପୁରାଣ ଆଦିରେ ଦେଖାଯାଏ ।

ପୁନଶ୍ଚ ଏହି ଗ୍ରନ୍ଥର ବିଶେଷ ଆକର୍ଷଣ ହେଉଛି କେତେଗୁଡ଼ିଏ ଖାଣ୍ଟି କୋଶ୍‌ଲୀ-ସମ୍ବଲପୁରୀ ଶବ୍ଦର ବ୍ୟବହାର । ନୁନି, ନିସତ, ଛିନୁ, ଖେଦି, ଖୁନ୍ଦାମାରି, ସାଉଁଟି, ବଛି (ବାଛୁରୀ), ମୋହାନଈ (ମହାନଦୀ), ଅଚାବୁହା (ବିବ୍ରତ), ଯୁନ (ଯୋଜନ), ଶୂନ୍ନ୍ୟ (ଶୂନ୍ୟରୁ), ଉଧରି (ଉଦ୍ଧରି), ବୁଧିବଳ (ବୁଦ୍ଧି ବଳ), ଡୋଖ (ସୁବିଧା), ପ୍ରାକର୍ମ (ପରାକର୍ମ), ନିନା (ନିଜଠାରୁ ବଡ଼), ତୁସ୍ତି (ସ୍ତୁତି) ମାନୁସ (ମଣିଷ), ଦର୍ବ୍ୟ (ଦ୍ରବ୍ୟ) ଇତ୍ୟାଦି ।

ସମ୍ଭବତଃ ଏଗ୍ରନ୍ଥ ପଶ୍ଚିମ ଓଡ଼ିଶାର ସାଧାରଣ ଓ ସ୍ୱଳ୍ପ ଶିକ୍ଷିତ ଲୋକଙ୍କ ପାଇଁ ରଚିତ ହୋଇଥିଲା । ତେଣୁ ସେମାନଙ୍କ ବୋଧଗମ୍ୟ ହେବା ଭଳି ଶବ୍ଦ ଚୟନ କରି ବ୍ୟବହାର କରାଯାଇଥିଲା ।

ଗ୍ରନ୍ଥରେ ବହୁ ସ୍ଥାନରେ 'ଳ' ପରିବର୍ତ୍ତେ 'ଲ'ର ବ୍ୟବହାର ପଶ୍ଚିମ ଓଡ଼ିଶାର ଜନସାଧାରଣ ବ୍ୟବହାର କରୁଥିବା କଥିତ ଭାଷାକୁ ସୂଚାଇଥାଏ ।

## କବି ଯୁଗ ଦାସଙ୍କ ଜୀବନ ଦର୍ଶନ

କବି ଯୁଗ ଦାସ ନୃସିଂହ ଚରିତ ଗ୍ରନ୍ଥରେ ବେଦ ବେଦାନ୍ତର ଚର୍ଚ୍ଚା କରି ନାହାନ୍ତି କିମ୍ବା ଉଚ୍ଚାଙ୍ଗ ଆଦର୍ଶ ପରିବେଷଣ କରିନାହାନ୍ତି ।

କିନ୍ତୁ ଏହି ଗ୍ରନ୍ଥରେ ସାଧାରଣ ଜନତାକୁ ଧର୍ମାଭିମୁଖୀ କରିବାର ଲକ୍ଷ୍ୟ ପରିଦୃଷ୍ଟ ।

ସେ ଯେଉଁ ମାର୍ଜାର କେଶରୀ ଆଖ୍ୟାନ ଉପସ୍ଥାପନ କରିଛନ୍ତି, ତାହା କୌଣସି ହିନ୍ଦୁ ଶାସ୍ତ୍ରପୁରାଣରେ ନାହିଁ । ସ୍ଥାନୀୟ କିମ୍ବଦନ୍ତୀର ଆଧାରରେ ସେ ନୃସିଂହ ଚରିତ ରଚନା କରିଥିବା ପ୍ରକାଶ କରିଅଛନ୍ତି ।

ତେବେ ଧର୍ମ ଓ ନୀତି ଆଗରେ ମଣିଷର ଗର୍ବ ଓ ଅହଙ୍କାରର ସ୍ଥାନ ନାହିଁ । ଧର୍ମରେ ଗ୍ଲାନି ଦେଖାଦେଲେ ବିଶ୍ୱକର୍ତ୍ତା ବିଷ୍ଣୁ ଯୁଗେ ଯୁଗେ ଅବତାର ଗ୍ରହଣ କରି ଅଧର୍ମ ଓ ଅନ୍ୟାୟର ବିନାଶ ସାଧନ କରିଥାନ୍ତି ଏବଂ ଧର୍ମର ପ୍ରତିଷ୍ଠା କରିଥାନ୍ତି । ଆଉ ସବୁ କାହାଣୀ ମନଗଢ଼ା ବୋଲି ମନେହୁଏ ।

କବି ଯୁଗ ଦାସ ଉପଲବ୍ଧି କରିଛନ୍ତି ଯେ, ଦୁନିଆ ହେଉଛି ମାୟାର ଖେଳଘର । ଦୁନିଆରେ ଚିରସ୍ଥାୟୀ ବୋଲି କିଛି ନାହିଁ । ମାୟା

ସଂସାରରୁ ମୁକ୍ତି ପାଇବାକୁ ହେଲେ ତୀର୍ଥଯାତ୍ରା କରି ଦେବତା ଦର୍ଶନ କରିବାକୁ ହେବ । ତୀର୍ଥ ଯାତ୍ରା ଦ୍ୱାରା ପାପ ଭାରା ଖଣ୍ଡିତ ହୋଇ ପୁଣ୍ୟ ଲାଭ ହୁଏ । ଏହାକୁ ସେ ନିମ୍ନ ଲିଖିତ ପଦରେ ପ୍ରକାଶ କରି ତାଙ୍କର ଜୀବନ ଦର୍ଶନକୁ ସ୍ପଷ୍ଟ କରିଛନ୍ତି ।

" ଏ ସଂସାର ସାଗର ଯେ ମିଛର ପସରା
ତୀର୍ଥ ଯାତ୍ରା କଲେ ଯେ ଖଣ୍ଡିବ ପାପ ଭାରା ।"

## ଯୁଗ ଦାସଙ୍କ 'ନୃସିଂହ ରଚିତ" : ବିଷୟବସ୍ତୁ

କନ୍ଧ କବି ଯୁଗ ଦାସ ତାଙ୍କର 'ନୃସିଂହ ଚରିତ'ରେ ବର୍ଣ୍ଣନା କରିଛନ୍ତି-

ତ୍ରେତୟା ଯୁଗରେ ସୁବାହୁ ବନରେ ଭଡ଼ଙ୍ଗ ମୁନି ଆଶ୍ରମ କରିଥିଲେ । ତାଙ୍କର ମାଳତୀ ନାମ୍ନୀ ଏକ ସୁନ୍ଦରୀ କନ୍ୟା ଥିଲା ।

ମୁନିକନ୍ୟା ମାଳତୀକୁ ଲଙ୍କାର ରାଜା ରାବଣ ଧର୍ଷଣ କରି ଗୋଦାବରୀ ନଦୀରେ ପକାଇ ଦେଲା ।

ଗୋଦାବରୀ ନଦୀ ମୁମୂର୍ଷୁ ମାଳତୀକୁ ଦୟାକରି କୂଳରେ ପହଞ୍ଚାଇ ଦେଲା । ମାଳତୀ ହୃତ ସଂଜ୍ଞା ଫେରି ପାଇବା ପରେ ମାତା ପିତାଙ୍କ ପାଖକୁ କିପରି ଫେରିବ, ସେହି ଚିନ୍ତାରେ କାନ୍ଦିବାକୁ ଲାଗିଲା ।

ମାଳତୀର କାନ୍ଦଶୁଣି 'ମୂଷିକରାଜ' ତା' ପାଖକୁ ଆସିଲା ଓ ତାକୁ ତା'ର ପିତାମାତାଙ୍କ ପାଖରେ ପହଞ୍ଚାଇ ଦେବ ବୋଲି ଆଶ୍ୱାସନା ଦେଇ ସଙ୍ଗରେ ନେଲା । ମୂଷିକ ରାଜ ଅସହାୟ ମାଳତୀକୁ ପଥ ମଧ୍ୟରେ ବଳାତ୍କାର କଲା । ଫଳରେ ମାଳତୀ ଗର୍ଭରୁ "ମୂଷିକ

ଦୈତ୍ୟ'' ଜନ୍ମଗ୍ରହଣ କଲା । ମୂଷିକ ଦୈତ୍ୟ ଜନ୍ମହେବା ପରେ ତା'ର ମାଆ ମାଳତୀକୁ ଖାଇଲା ।

କ୍ରମେ ମୂଷିକ ଦୈତ୍ୟର ପ୍ରକୋପରେ ପୃଥିବୀ ପ୍ରକମ୍ପିତ ହେଲା । ଏପରିକି ସ୍ୱୟଂ ଦୁର୍ଗା ଦେବୀ ତା' ସଙ୍ଗରେ ଯୁଦ୍ଧ କରି ପରାଜିତ ହେଲେ । ଏହା ପରେ ଦେବ ଦେବୀମାନେ ପ୍ରତିକାର ପାଇଁ ବ୍ରହ୍ମାଙ୍କୁ ଜଣାଇଲେ ।

ବ୍ରହ୍ମା କହିଲେ, ମୂଷିକ ଦୈତ୍ୟ ଈଶ୍ୱରଙ୍କଠାରୁ ଅମରବର ପାଇଛି । ତାକୁ କେବଳ ନରସିଂହ ବିଷ୍ଣୁ ଶାସ୍ତି ଦେଇ ପାରିବେ । ରାମଚନ୍ଦ୍ର ଅବତାର ଗ୍ରହଣ କରିଛନ୍ତି । ସେ ସ୍ୱୟଂ ବିଷ୍ଣୁ ଅଟନ୍ତି ଓ ସେ କେବଳ ନରସିଂହ ରୂପ ଧାରଣ କରି ପାରିବେ ।

ଦେବଦେବୀମାନେ ଅଯୋଧ୍ୟା ନଗରକୁ ଯାଇ ଶ୍ରୀ ରାମଙ୍କୁ ଗୁହାରି କଲେ ।

ରାମଚନ୍ଦ୍ର ନୃସିଂହ ରୂପ ଧାରଣ କରି ମୂଷିକ ଦୈତ୍ୟକୁ ଗୋଡ଼ାଇଲେ ।

ମୂଷିକ ଦୈତ୍ୟ ରାମଚନ୍ଦ୍ରଙ୍କର ନରସିଂହ ରୂପ ଦେଖି ଭୟରେ ଗୋଦାବରୀ ନଦୀ ଜଳରେ ମୀନ ରୂପ ଧାରଣ କରି ପଶିଗଲା । ତା'ପରେ ପାତାଳ, ଭୂତଳ, ରସାତଳରେ ଲୁଚିବାକୁ ଲାଗିଲା । କିନ୍ତୁ ନରସିଂହ ତା'ର ପିଛା ଛାଡ଼ିଲେ ନାହିଁ । ଶେଷରେ ମୂଷିକ ଦୈତ୍ୟ ଗନ୍ଧଗିରି (ଗନ୍ଧମାର୍ଦ୍ଦନ) ପାଖରେ ଶରଣ ପଶିଲା ।

ଗନ୍ଧଗିରି ତା'ର ପାର୍ବତ୍ୟ ସୁଡ଼ଙ୍ଗରେ ମୂଷିକ ଦୈତ୍ୟକୁ ସ୍ଥାନ ଦେଲା ।

ନରସିଂହ ଗନ୍ଧଗିରିରେ ପ୍ରବେଶ କଲେ । ଗନ୍ଧଗିରି ନରସିଂହ ରୂପୀ ରାମଚନ୍ଦ୍ରଙ୍କ ପାଦ ତଳେ ପଡ଼ି ଗୁହାରି କଲା, ଶରଣ ପ୍ରାର୍ଥୀକୁ ମରଣ ନଦେଇ କ୍ଷମାକର ।

ଦେବଦେବୀମାନେ ନୃସିଂହ ରୂପୀ ରାମଚନ୍ଦ୍ରଙ୍କୁ ଗନ୍ଧଗିରିର ସୁଡ଼ଙ୍ଗ ପାଖରେ, ଯେଉଁ ପଥ ଦେଇ ମୂଷିକ ଦୈତ୍ୟ ଗନ୍ଧଗିରି ଗର୍ଭରେ ପଶି ଆଶ୍ରୟ ନେଇଥିଲା, ସେଠାରେ ମାର୍ଜାର କେଶରୀ ରୂପରେ ଜଗି ରହିବାକୁ ପ୍ରାର୍ଥନା କଲେ ।

ନୃସିଂହ ମାର୍ଜାର ବେଶରେ ଗନ୍ଧଗିରିର ସୁଡ଼ଙ୍ଗ ପାଖରେ ସେହି ଦିନଠାରୁ ଜଗି ବସି ପୃଥିବୀକୁ ମୂଷିକ ଦୈତ୍ୟର ଉପଦ୍ରବରୁ ରକ୍ଷା କରିବାକୁ ଲାଗିଲେ ।

ନୃସିଂହନାଥ କ୍ଷେତ୍ରରେ ନରସିଂହ ମାର୍ଜାର କେଶରୀ ରୂପେ ପୂଜା ପାଇଲେ ।

ପର୍ବତର ଅପରପାର୍ଶ୍ୱରେ ରାମଚନ୍ଦ୍ରଙ୍କ ଭାଇ ଲକ୍ଷ୍ମଣ ‘‘ହର’’ ବେଶ ଧାରଣ କରି ମୂଷିକ ଦୈତ୍ୟକୁ ଜଗିଲେ ।

## ମାର୍ଜାର କେଶରୀ : ଆଦିବାସୀ ଚେତନାର ପ୍ରତୀକ

ବିଷ୍ଣୁଙ୍କ ଦଶ ଅବତାର ମଧ୍ୟରେ ନୃସିଂହ ବା ନରସିଂହ ଅବତାର ରହିଛି ।

ନରସିଂହଙ୍କ ରୂପ କଳ୍ପନାରେ ତାଙ୍କର ମସ୍ତକ ସିଂହ ସଦୃଶ ଓ ଶରୀର ନର ସଦୃଶ ବୋଲି ବର୍ଣ୍ଣିତ ଅଛି । ଏପରି ମୂର୍ତ୍ତି ବିଭିନ୍ନ ନୃସିଂହ

କ୍ଷେତ୍ରରେ ପୂଜା ପାଇଥାନ୍ତି । ଭକ୍ତ ପ୍ରହ୍ଲାଦର ପ୍ରାର୍ଥନା କ୍ରମେ ନରସିଂହ ସ୍ତମ୍ଭ ଦେହରୁ ଆବିର୍ଭୂତ ହୋଇ ପ୍ରହ୍ଲାଦଙ୍କ ପିତା ତଥା ଦୈତ୍ୟରାଜ ହିରଣ୍ୟକଶିପୁକୁ ନିଜ ନଖରେ ବିଦାରଣ କରିଥିଲେ ।

କିନ୍ତୁ ନୃସିଂହ ନାଥ କ୍ଷେତ୍ରରେ ପ୍ରତିଷ୍ଠିତ ଦେବତା ମାର୍ଜାର କେଶରୀଙ୍କ ମସ୍ତକ ମାର୍ଜାର ବା ବିରାଡ଼ି ପରି ଓ ଶରୀର କେଶରୀ ବା ସିଂହ ପରି ।

ଏପରି ମୂର୍ତ୍ତି କଳ୍ପନା ଭାରତରେ ବିରଳ ।

ଏହି ମାର୍ଜାର କେଶରୀ ପର୍ବତ ସୁଡ଼ଙ୍ଗରେ ଜଗି ବସି ମୂଷିକ ଦୈତ୍ୟର ପଥରୋଧ କରିଛନ୍ତି ।

ମୂଷିକ ଦୈତ୍ୟ ନୃସିଂହ ପୁରାଣ ବର୍ଣ୍ଣିତ ହିରଣ୍ୟକଶିପୁ ଦୈତ୍ୟ ସଙ୍ଗେ ତୁଳନୀୟ ।

ଆଦିବାସୀମାନଙ୍କର ପର୍ବପର୍ବାଣୀ ଓ ପୂଜା ଉପାସନା କୃଷିଭିତ୍ତିକ । ମୂଷିକ ଫସଲ ନଷ୍ଟକାରୀ ଜୀବ । ତେଣୁ ତାକୁ ଯୁଗ ଦାସ ଦୈତ୍ୟ ରୂପେ ଦର୍ଶାଇଥିବା ସମ୍ଭବ । ପୁଣି ବିରାଡ଼ି ରୂପେ ରାମଚନ୍ଦ୍ରଙ୍କ ପରିକଳ୍ପନା ଆଦିବାସୀ ଚିନ୍ତା ଓ ଚେତନାର ଧାରାକୁ ସୂଚିତ କରେ । ଆଦିବାସୀ ଚେତନାକୁ ପରିପୁଷ୍ଟ କରିବା ପାଇଁ ଯୁଗ ଦାସ ବୈଷ୍ଣବ ଚେତନା ପ୍ରତି ଆକୃଷ୍ଟ ହୋଇଥିବା ମନେହୁଏ ।

ଗବେଷକମାନଙ୍କ ମତରେ ଖ୍ରୀଷ୍ଟିୟ ଅଷ୍ଟମ ଶତାବ୍ଦୀରେ ସୋମବଂଶୀ ରାଜା ହର୍ଷଗୁପ୍ତଙ୍କ ଅକାଳବିୟୋଗ ପରେ ତାଙ୍କର ବିଧବା ରାଣୀ ବାସଟା ଦେବୀ ନୃସିଂହନାଥ ମନ୍ଦିର ତିଆରି କରି ସେଠାରେ ପୁରୁଷୋତ୍ତମ- ନୃସିଂହ ମୂର୍ତ୍ତି ସ୍ଥାପନ କରିଥିଲେ । କାରଣ ବାସଟା ଦେବୀ ପରମ ବୈଷ୍ଣବୀ ଥିଲେ । ତାଙ୍କ ଦ୍ୱାରା ନିର୍ମିତ ମନ୍ଦିର ପଞ୍ଚଦଶ

ଶତାବ୍ଦୀର ଆରମ୍ଭ ବେଳକୁ ଜୀର୍ଣ୍ଣ ହୋଇଯାଇଥିଲା । ପୁଣି ପୁରୁଷୋତ୍ତମ-ନୃସିଂହ ମୂର୍ତ୍ତି ସ୍ଥାନାନ୍ତର ହୋଇ ଯାଇଥିଲେ । ତେଣୁ ପାଟଣାର ଚୌହାନ ନୃପତି ପ୍ରଥମ ବୈଜଲ ଦେବ ଖ୍ରୀ : ୧୪୧୩ରେ ମନ୍ଦିରର ଜୀର୍ଣ୍ଣ ସଂସ୍କାର କରି ହରି ଶବର ଦ୍ୱାରା ପ୍ରଦତ୍ତ ମୂର୍ତ୍ତି ମନ୍ଦିର ଭିତରେ ସ୍ଥାପନ କଲେ । ଏହି ମୂର୍ତ୍ତି ପୁରୁଷୋତ୍ତମ-ନୃସିଂହ ପରି ବିଗ୍ରହ ନ ହୋଇ ବିଡ଼ାଳ କେଶରୀ ରୂପ ପ୍ରାପ୍ତ ହୋଇଥିଲା । ସେହି ବିଡାଳ ନୃସିଂହ ମୂର୍ତ୍ତି ନୃସିଂହ ନାଥ ମନ୍ଦିରରେ ପୂଜା ପାଇଲେ । ସେହି ମୂର୍ତ୍ତି କେବଳ ଆଦିବାସୀ ପୂଜିତ ଦେବତା ନ ହୋଇ ସର୍ବସାଧାରଣଙ୍କର ଦେବତା ପାଲଟି ଗଲେ ।

ବାସଟା ଦେବୀଙ୍କ ଦ୍ୱାରା ପ୍ରତିଷ୍ଠିତ ପୁରୁଷୋତ୍ତମ ନୃସିଂହ ମୂର୍ତ୍ତି ଏବେ ମନ୍ଦିର ପରିସରରେ ଏକ ଛୋଟ ମଣ୍ଡପ ଭିତରେ ପରିତ୍ୟକ୍ତ ଅବସ୍ଥାରେ ଅଛନ୍ତି ଓ 'ଢଟା ନୃସିଂହ' ନାମ ଧାରଣ କରିଛନ୍ତି ।

ପୁରୁଷୋତ୍ତମ-ନରସିଂହଙ୍କ ସ୍ଥାନରେ ହରିଶବର ପାଖରୁ ପ୍ରାପ୍ତ ଓ ବୈଜଲ ଦେବଙ୍କ ଦ୍ୱାରା ପ୍ରତିଷ୍ଠିତ ବିଡ଼ାଳ- ନରସିଂହଙ୍କ ପୂଜା ପ୍ରବର୍ତ୍ତିତ ହୋଇଥିଲେ ମଧ୍ୟ ମନ୍ଦିରର ନାମ ପୂର୍ବ ପରି ''ଶ୍ରୀ ଶ୍ରୀ ନୃସିଂହନାଥ ମନ୍ଦିର'' ରହିଛି । ଗନ୍ଧଗିରି ବା ଗନ୍ଧମାର୍ଦ୍ଦନ ମଧ୍ୟ ଶ୍ରୀ ଶ୍ରୀ ନୃସିଂହ ନାଥ ତୀର୍ଥ ବା କ୍ଷେତ୍ର ରୂପେ ଖ୍ୟାତି ଅର୍ଜ୍ଜନ କରିଛି ।

ଏହିପରି ଭାବରେ କନ୍ଧ ବୈଷ୍ଣବ ଯୁଗ ଦାସ ତାଙ୍କର 'ନୃସିଂହ ଚରିତ' ଗ୍ରନ୍ଥରେ ବିଡ଼ାଳ ନୃସିଂହଙ୍କ ମାହାତ୍ମ୍ୟ ଗାନ କରିବା ସଙ୍ଗେ ସଙ୍ଗେ ଆଦିବାସୀ ଓ ଅଣ ଆଦିବାସୀ ଗୋଷ୍ଠୀର ମହାମିଳନ କ୍ଷେତ୍ର ପ୍ରସ୍ତୁତ କରି ଅଛନ୍ତି ।

# ଐତିହାସିକ ଶିବ ପ୍ରସାଦ ଦାଶଙ୍କ ନୃସିଂହ ନାଥ ବର୍ଣ୍ଣନା

ଐତିହାସିକ ଶିବ ପ୍ରସାଦ ଦାଶ ତାଙ୍କର ସମ୍ବଲପୁର ଇତିହାସ (ଦ୍ୱିତୀୟ ସଂସ୍କରଣ-୪୦୯ ପୃଷ୍ଠା)ରେ ନିମ୍ନଲିଖିତ ମତେ ଉଲ୍ଲେଖ କରିଅଛନ୍ତି ।

''ବୋଡ଼ାସମ୍ବର ଅନ୍ତଃପାତୀ ନୃସିଂହନାଥ ସମ୍ବଲପୁରର ପ୍ରଧାନ ତୀର୍ଥ । ଏହାକୁ ପାପକ୍ଷୟ ଘାଟ, ପାପ ହରଣ ବା ହରଣ ପାପ ମଧ୍ୟ କହନ୍ତି । ଏହା ଗନ୍ଧମାର୍ଦ୍ଦନ ପାହାଡ଼ର ପାଟଣା ଓ ବୋଡ଼ାସମ୍ବରର ଉଭୟର ସୀମା ଉପରେ ଅବସ୍ଥିତ । ଏହି ସ୍ଥାନର ଦୂରତା ସମ୍ବଲପୁର ସହରରୁ ୧୦୫ ମାଇଲ, ପଦ୍ମପୁର ସହରରୁ ୨୦ ମାଇଲ ପାଇକମାଳ ଗ୍ରାମରୁ ୨ ମାଇଲ ଏବଂ ଦୁର୍ଗାପାଲିରୁ ୨ ମାଇଲ ।

ବହୁକାଳରୁ ଏ ତୀର୍ଥ ପ୍ରସିଦ୍ଧ ଏବଂ ସେଠାରେ ଏକ ସାମାନ୍ୟ ମନ୍ଦିର ଥିଲା । ବର୍ତ୍ତମାନ ମନ୍ଦିରଟି ପାଟଣାର ଅଷ୍ଟମ ଚୌହାଣ ରାଜା ବୈଜଲ ଦେବ ନିର୍ମାଣ କରିଥିଲେ ଏବଂ ମନ୍ଦିରକୁ ପାଟଣାର ଲୋଇସିଂହା ଗ୍ରାମ ଉତ୍ସର୍ଗ କରିଥିଲେ । ଏହି ଗ୍ରାମ ନରସିଂହନାଥରୁ ଅଳ୍ପଦୂରରେ ବଲାଙ୍ଗୀର-ନରସିଂହନାଥ ସଡ଼କ ଉପରେ ଅବସ୍ଥିତ ।

ମନ୍ଦିରର ପୃଷ୍ଠ କାନ୍ଥରେ ଏକ ଶିଳାଲିପିରେ ମନ୍ଦିର ନିର୍ମାଣ ଓ ଗ୍ରାମୋତ୍ସର୍ଗ କଥା ଉଲ୍ଲିଖିତ ହୋଇଛି ।

(ଶିଳାଲେଖାରେ ଚାରୋଟି ଧାଡ଼ି ରହିଛି । ତହିଁରେ ଉଲ୍ଲେଖ ଅଛି- ''ନମଃ ଶ୍ରୀ ନୃସିଂହାୟ ସ୍ୱସ୍ତି ଶ୍ରୀ ବିକାରୀ ନାମ୍ ସମ୍ବତ୍ସରେ ଚୈତ୍ର

ପୌର୍ଣ୍ଣିମା ହସ୍ତା ନକ୍ଷତ୍ରେ ପାଟଣା ନଗରସ୍ଥିତ ବସ୍ରାଜ ଦେବଙ୍କ ପୁତ୍ର ବୈଜଳ (୨ୟ ଧାଡ଼ି) ଦେବ ମନୋହର ପୁତ୍ରାର୍ଦ୍ଧେ ଗନ୍ଧମାର୍ଦ୍ଦନ ପର୍ବତେ ବିରାଳ ନରସିଂହନାଥ ସ୍ୱାମୀଙ୍କର ଦେଉଳ ତୋଳାଇଲା । ହୃଦୟ ଭୂଷଣ ରନ୍‌ମାନ ଗାଈ ଶତେକ ଲୋହା ସିଂଘା (ତୃତୀୟ ଧାଡ଼ି) ଗ୍ରାମ ପାଶେ ଆଦି ମେରୋଡ଼ା ଦରିଲୋନା ଲୌଶ୍ଚନ୍ଦ୍ରୌ ଭୂମି ରାପଙ୍ଗ ପଦାସଶ୍ଚ ଅହଶ୍ଚ ରାତ୍ରିଶ୍ଚ ସନ୍ଧ୍ୟା ଧର୍ମେ ପୂଜାପତି ଚରୁପାଳ ପାଣିଗ୍ରାହୀ ପୂରାଣେ (ଚତୁର୍ଥ ଧାଡ଼ି) ଦେଲା ପ୍ରଶସ୍ତିକାର ଅଘା ଶ୍ରୀ ନୃସିଂହସ୍ୟ ପ୍ରୀତୟେ ) (ବିନାୟକମିଶ୍ର)

ନରସିଂହ ନାଥର ପ୍ରାକୃତିକ ଦୃଶ୍ୟ ଅତି ମନୋରମ ଏବଂ ସେଠାରେ କେତେକ ପ୍ରାକୃତିକ ଜଳପ୍ରପାତ ରହିଅଛି ।

ଗନ୍ଧମାର୍ଦ୍ଦନ ୩,୨୩୪ ଫୁଟ ଉଚ୍ଚ । ପ୍ରକୃତ ତୀର୍ଥ 'ପାପହରଣ ପ୍ରପାତ' ପାହାଡ଼ ଉପରେ ଅବସ୍ଥିତ । ଉତ୍ପତ୍ତି ସ୍ଥାନରେ ପ୍ରପାତଟି ଅନେକ ଧାରାରେ ବିଭକ୍ତହୋଇ 'ସହସ୍ରଧାର' ନାମରେ କଥିତ ହୁଏ । ପ୍ରଧାନ ପ୍ରଧାନ ଧାରର ବିଭିନ୍ନନାମ ଅଛି । ତୃତୀୟ ଧାର ସବୁଠୁ ବଡ଼ ଏବଂ ଦଶମାଇଲ ଦୂରରୁ ଦେଖାଯାଏ । ସମତଳ ଭୂମିକୁ ସ୍ପର୍ଶ କରିବା ସ୍ଥାନରେ ପ୍ରପାତ ଏକ ଗିରିନଦୀରେ ପରିଣତ ହୋଇ ଅଙ୍ଗନଦୀରେ ପଡ଼ିଛି । ପ୍ରପାତ ଯେଉଁ ସ୍ଥାନରେ ସମତଳ ଭୂମିକୁ ସ୍ପର୍ଶ କରୁଛି, ସେହି ସ୍ଥାନରେ ନୃସିଂହନାଥ ମନ୍ଦିର ଅବସ୍ଥିତ । ସାତଟି ଅଶ୍ୱ ଉପରେ ବିଚିତ୍ର କାରୁକାର୍ଯ୍ୟରେ ମନ୍ଦିରଟି କୋଣାର୍କ ଛାଞ୍ଚରେ ନିର୍ମିତ ହୋଇଥିଲା । ସାଦା ଚୂନ ଛପାଇ କରି ଜୀର୍ଣ୍ଣ ସଂସ୍କାର କରିବା ଦ୍ୱାରା ମନ୍ଦିରର ଶ୍ରୀ କଥଞ୍ଚିତ ନଷ୍ଟ ହୋଇଅଛି ।

ନୃସିଂହନାଥର ପ୍ରାକୃତିକ ଦୃଶ୍ୟ ବିଶେଷତଃ ଏହାର ଭୀମଧାର, କପିଳ ଧାର, ଭୀମ ମଣ୍ଡପ ପ୍ରଭୃତି ପ୍ରକୃତି ଦର୍ଶନୀୟ ବସ୍ତୁ । କିମ୍ବଦନ୍ତୀ ଅଛି, କପିଳ ଋଷିଙ୍କର ଏଠାରେ ଆଶ୍ରମ ଥିଲା । ପାଣ୍ଡବମାନେ ଓ ରାମ, ଲକ୍ଷ୍ମଣ, ସୀତା ବନବାସ କାଳରେ ଏଠାରେ କିଛି କିଛି କାଳ ଅବସ୍ଥାନ କରିଥିଲେ ।

ବୈଶାଖ ମାସରେ ନୃସିଂହ ଚତୁର୍ଦ୍ଦଶୀ ଦିନ ଏବଂ ସୂର୍ଯ୍ୟ ପରାଗ ଓ ଚନ୍ଦ୍ର ଗ୍ରହଣ ଅବସରରେ ଏଠାରେ ଏକ ବଡ଼ ମେଳା ହୁଏ । ସ୍ଥାନାନ୍ତରରୁ ବିଶେଷତଃ ଛତିଶଗଡ଼ରୁ ଅସଂଖ୍ୟ ଯାତ୍ରୀ ସମବେତ ହୁଅନ୍ତି ଏବଂ ପ୍ରପାତ ଜଳରେ ବୁଡ଼ ପକାଇ ପାପକ୍ଷୟ କରନ୍ତି । ଅନେକେ ପ୍ରୟାଗ ଗଙ୍ଗା ପରିବର୍ତ୍ତେ ଅତ୍ରତ୍ୟ ଗୁପ୍ତ ଗଙ୍ଗାରେ ପିତୃଅସ୍ଥି ପ୍ରବାହ କରନ୍ତି ।

ଓଡ଼ିଶା ସରକାରଙ୍କ ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ଏ ଚୂନ ପଲସ୍ତରା ଖୋଳି ପରିଷ୍କାର କରିବା କାର୍ଯ୍ୟ ଚାଲିଛି ।

